॥ ଶ୍ରୀହରିଃ ॥

1321▲

# ଈଶ୍ୱରମୟ ଏ ଜଗତ

**सब जग ईश्वररूप है ( ओड़िआ )**




## ସ୍ୱାମୀ ରାମସୁଖଦାସ

॥ ଶ୍ରୀହରିଃ ॥

# ଈଶ୍ୱରମୟ ଏ ଜଗତ

**सब जग ईश्वररूप है ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସ୍ୱାମୀ ରାମସୁଖଦାସ

ଭାଷାନ୍ତର—ନିରଞ୍ଜନ ପଣ୍ଡା

1321 Sab jag ishwar roop_Section_1_Front

॥ ଶ୍ରୀହରିଃ ॥

# ନମ୍ର ନିବେଦନ

ବିଶ୍ୱରେ ହିନ୍ଦୁ, ଇସଲାମ, ଖ୍ରୀଷ୍ଟ, ପାରସୀ, ଇହୁଦୀ ଆଦି ଅନେକ ଧର୍ମ, ମତ ଓ ସମ୍ପ୍ରଦାୟ ରହିଛି । ପ୍ରତ୍ୟେକ ଧର୍ମରେ ମଧ୍ୟ ଅନେକ ଶାଖା ଉପଶାଖା ରହିଛି । କେବଳ ସେତିକି ନୁହେଁ, ଗୋଟିଏ ମାତ୍ର ଧର୍ମ, ମତ ଓ ସମ୍ପ୍ରଦାୟକୁ ଅନୁସରଣ କରୁଥିବା ଦୁଇଜଣ ବ୍ୟକ୍ତିଙ୍କର ବିଗ୍ରରଧାରା ସମ୍ପୂର୍ଣ୍ଣ ସମାନ ନୁହେଁ । ସମାଜରେ ଦର୍ଶନଭେଦ, ମତଭେଦ, ରୁଚିଭେଦ, ଶ୍ରେଣୀଭେଦ, ଜାତିଭେଦ, ବର୍ଣ୍ଣଭେଦ, ଆଶ୍ରମଭେଦ, ଦେଶଭେଦ, ପ୍ରାନ୍ତଭେଦ, ଭାଷାଭେଦ ପ୍ରଭୃତି ଅନେକ ଭେଦ ବିଦ୍ୟମାନ । ମାତ୍ର ଭଗବଦ୍‌ଗୀତାର ସିଦ୍ଧାନ୍ତ ସମସ୍ତ ଭେଦର ଉର୍ଦ୍ଧ୍ୱରେ । ଏହା ବ୍ୟାପକ ତଥା ସମସ୍ତ ଭେଦ ମଧ୍ୟରେ ଐକ୍ୟ ଓ ସମନ୍ୱୟ ସ୍ଥାପନ କରିବାରେ ସମର୍ଥ । ଏଥିରେ ଯେଉଁ ମତଭେଦ ପ୍ରତୀୟମାନ ହୁଏ, ତାହା ଭଗବଦ୍‌ଗୀତାର ନୁହେଁ, ବରଂ ଟୀକାକାରମାନଙ୍କର । ଗୀତାର ସର୍ବୋପରି ସିଦ୍ଧାନ୍ତ ହେଉଛି—**'ବାସୁଦେବଃ ସର୍ବମ୍'** (୭ । ୧୯) ଅର୍ଥାତ୍ ସବୁକିଛି ପରମାତ୍ମା । ଏହି ସିଦ୍ଧାନ୍ତରେ କୌଣସି ମତଭେଦ ରହିପାରେ ନାହିଁ, ସମସ୍ତ ମତଭେଦର ପରିସମାପ୍ତି ଘଟେ । କାରଣ ସମସ୍ତ ମତଭେଦ 'ଅହମ୍'ରୁ ସୃଷ୍ଟି ହୋଇଥାଏ ଏବଂ **'ବାସୁଦେବଃ ସର୍ବମ୍'**ରେ 'ଅହମ୍'ର ସ୍ଥାନ ନାହିଁ । ଏହି କାରଣରୁ ଧର୍ମ, ମତ ଓ ସମ୍ପ୍ରଦାୟ ନିର୍ବିଶେଷରେ ଗୀତା ସମସ୍ତଙ୍କର ପ୍ରିୟ । ଗୀତାରୂପୀ ଦର୍ପଣରେ ସମସ୍ତେ ନିଜ ନିଜର ମତକୁ ଦେଖି ପାରନ୍ତି, କାରଣ ଗୀତା ପରମାତ୍ମାଙ୍କର ଅଲୌକିକ ସମଗ୍ରରୂପର ବର୍ଣ୍ଣନା କରେ । ସମଗ୍ରତାରେ କୌଣସି ଭେଦର ସ୍ଥାନ ନାହିଁ ।

ଗୀତା ବ୍ୟବହାରିକ ଏକତା (ସାମ୍ୟ) ପ୍ରତିପାଦନ ନ କରି ତତ୍ତ୍ୱର ଏକତା ପ୍ରତିପାଦନ କରେ । ବ୍ୟବହାରିକ ଭିନ୍ନତା ଯଥାର୍ଥ ଓ ଆବଶ୍ୟକ ମଧ୍ୟ । ବ୍ୟବହାରିକ ଏକତା ପଶୁତ୍ୱ ଏବଂ ଭିନ୍ନତା (ଯଥାଯୋଗ୍ୟ ବ୍ୟବହାର) ମନୁଷ୍ୟତ୍ୱ । ବ୍ୟବହାରରେ ଏକତା ରକ୍ଷା କରିବା ଓ ତତ୍ତ୍ୱରେ ଭିନ୍ନତା ଦେଖିବା ଦୋଷାବହ । ଏଣୁ ଗୀତା ବ୍ୟବହାରିକ ଭେଦକୁ ଦୂର ନ କରି ତାତ୍ତ୍ୱିକ (ଦାର୍ଶନିକ) ଭେଦକୁ ଦୂର କରେ, ସମବର୍ତ୍ତନର ଶିକ୍ଷା ନ ଦେଇ ସମଦର୍ଶନର ଶିକ୍ଷା ଦିଏ ।

ସମ୍ପ୍ରତି ବିଶ୍ୱବନ୍ଧୁତ୍ୱର ସିଦ୍ଧାନ୍ତକୁ ଶ୍ରେଷ୍ଠ ବିବେଚନା କରାଯାଉଛି, ମାତ୍ର ଭାଇ ଭାଇ ମଧ୍ୟରେ ବି ସ୍ୱାର୍ଥ ଓ ଅଭିମାନ ହେତୁ ମତପାର୍ଥକ୍ୟ, ଭାଗବାଣ୍ଟ ଓ ଝଗଡ଼ା ମୁଣ୍ଡ ଟେକୁଛି, ଯାହାର ପ୍ରକୃଷ୍ଟ ଦୃଷ୍ଟାନ୍ତ କୌରବ ଓ ପାଣ୍ଡବଙ୍କର ଯୁଦ୍ଧ। ବିଶ୍ୱବନ୍ଧୁତ୍ୱ ଠାରୁ ମଧ୍ୟ ଶ୍ରେଷ୍ଠ ହେଲା ଆତ୍ମଭାବର ସିଦ୍ଧାନ୍ତ। ଏହି ସିଦ୍ଧାନ୍ତ ଅନୁସାରେ ସମସ୍ତଙ୍କୁ ଆତ୍ମା ମନେକଲେ ମଧ୍ୟ ସୂକ୍ଷ୍ମ ଅହମ୍ ରହିଯାଏ, ଯାହା କି ସମସ୍ତ ମତଭେଦର ଜନକ। ଆତ୍ମଭାବଠାରୁ ମଧ୍ୟ ଶ୍ରେଷ୍ଠ ହେଲା ଭଗବଭାବର ସିଦ୍ଧାନ୍ତ—**'ବାସୁଦେବଃ ସର୍ବମ୍'**। ସମସ୍ତଙ୍କ ଠାରେ ଭଗବାନଙ୍କୁ ଦେଖିଲେ କୌଣସି ମତପାର୍ଥକ୍ୟ ରହେ ନାହିଁ— ***'ନିଜ ପ୍ରଭୁମୟ ଦେଖହିଁ ଜଗତ କେହି ସନ କରହିଁ ବିରୋଧ'*** (ମାନସ, ଉତ୍ତର. ୧୧୨ ଖ)। କାରଣ ଭଗବାନ ସମସ୍ତଙ୍କର ଇଷ୍ଟ। ନିଜର ଇଷ୍ଟ ସର୍ବଦା ପୂଜନୀୟ ଓ ସମ୍ମାନାର୍ହ। ଯାହାକୁ ଇଷ୍ଟ, ପୂଜ୍ୟ ଓ ସମ୍ମାନାର୍ହ ମନେ କରାଯାଏ, ତା'ସହିତ ବିରୋଧ ହେବା ସମ୍ଭବ କିପରି? ଶିବମହିମ୍ନଃସ୍ତୋତ୍ରରେ କୁହାଯାଇଛି—

**ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି**
**ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତି ଚ।**
**ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥଜୁଷାଂ**
**ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବ ଇବ॥ ୭॥**

"ହେ ପ୍ରଭୁ! ବୈଦିକମତ (ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦ), ସାଂଖ୍ୟଶାସ୍ତ୍ର, ଯୋଗଶାସ୍ତ୍ର, ଶୈବମତ, ବୈଷ୍ଣବମତ ପ୍ରଭୃତି ବିଭିନ୍ନ ପ୍ରକାର ମତ-ମତାନ୍ତର ଅଛି; ତନ୍ମଧ୍ୟରୁ 'ଆମର ମତ ଉତ୍ତମ ଓ ଲାଭପ୍ରଦ'—ଏପରି ରୁଚିର ବିଚିତ୍ରତା (ରୁଚିଭେଦ) ହେତୁ ଅନେକ ବଙ୍କା ସିଧା ମାର୍ଗରେ ଚାଲୁଥିବା ମନୁଷ୍ୟଙ୍କ ପାଇଁ ଆପଣ ହିଁ ଏକମାତ୍ର ପ୍ରାପଣୀୟ ସ୍ଥାନ। ଯେପରି ବଙ୍କା-ସିଧା ମାର୍ଗରେ ପ୍ରବାହିତ ସମସ୍ତ ନଦୀ ସର୍ବଶେଷରେ ସମୁଦ୍ରରେ ମିଶନ୍ତି, ସେହିପରି ସମସ୍ତ ମତାବଲମ୍ବୀ ଶେଷରେ ଆପଣଙ୍କ ପାଖରେ ପହଞ୍ଚନ୍ତି।"

ମନରେ ନିଜ ମତ ପ୍ରତି ଆଗ୍ରହ ଥିବାରୁ ମନୁଷ୍ୟ ଅନ୍ୟମାନଙ୍କର ମତକୁ ପଢ଼େ ନାହିଁ କି ଶୁଣେ ନାହିଁ, ଫଳରେ ସେ ଅନ୍ୟମାନଙ୍କ ମତର ଉତ୍ତମ ଉତ୍ତମ ଶିକ୍ଷାରୁ ବଞ୍ଚିତ ରହିଯାଏ ଏବଂ ତାହାର ବୁଦ୍ଧି ସଂକୀର୍ଣ୍ଣ ଓ ରାଗଦ୍ୱେଷଯୁକ୍ତ ହୋଇ ରହିଯାଏ। ନିଜ ମତ ପ୍ରତି ଆଗ୍ରହ ନ ରହିଲେ

ବ୍ୟକ୍ତି ନିଜ ମତର ଅନୁସରଣ କରି ମଧ୍ୟ ଅନ୍ୟର ମତରୁ ଉତ୍ତମ ଓ ଲାଭପ୍ରଦ କଥାଗୁଡ଼ିକୁ ଗ୍ରହଣ କରିପାରେ । ସେ ଅନ୍ୟର ମତକୁ ତଥା ତାହାର ଅନୁସରଣକାରୀଙ୍କୁ ସମ୍ମାନ ଦେଇଥାଏ । ଏହା ଫଳରେ ତାହାର ବୁଦ୍ଧି ଓ ଜ୍ଞାନ ବିକଶିତ ହୁଏ ଏବଂ ସେ ନିଜ ସାଧନାରେ ଅଗ୍ରଗତି କରି ପରମସିଦ୍ଧି ଲାଭ କରେ । ଏଣୁ ପରମାତ୍ମପ୍ରାପ୍ତି ଚାହୁଁଥିବା ସାଧକମାନଙ୍କ ପକ୍ଷେ ନିଜ ମତାନୁସାରେ ଚଳିବା ସଙ୍ଗେ ସଙ୍ଗେ ନିଜ ମତର ଆଗ୍ରହ ଓ ପକ୍ଷପାତିତା ବର୍ଜନ କରି ସମସ୍ତ ମତକୁ ସମ୍ମାନ ଦେବା ଆବଶ୍ୟକ । 'ସବୁକିଛି ଭଗବାନ'—ଏହି ସିଦ୍ଧାନ୍ତକୁ ମାନିନେଲେ ସମସ୍ତଙ୍କର ମତ ଓ କର୍ତ୍ତବ୍ୟର ଭିନ୍ନତା ସତ୍ତ୍ୱେ ସେଥିପ୍ରତି ଭେଦବୁଦ୍ଧି ଓ ଦ୍ୱେଷ ହୁଏ ନାହିଁ କିଂବା କଳହ ମଧ୍ୟ ହୁଏ ନାହିଁ, ବରଂ ପରସ୍ପର ମଧ୍ୟରେ ପ୍ରେମଭାବ ଅକ୍ଷୁଣ୍ଣ ରହେ । ଏହି କାରଣରୁ ଭଗବଦ୍‌ଗୀତା କର୍ମଯୋଗୀ, ଜ୍ଞାନଯୋଗୀ, ଧ୍ୟାନଯୋଗୀ, ରାଜଯୋଗୀ ପ୍ରଭୃତି କୌଣସି ଯୋଗୀଙ୍କୁ ଦୁର୍ଲଭ ମହାତ୍ମା ନ କହି କେବଳ 'ସବୁକିଛି ଭଗବାନ' ବୋଲି ଅନୁଭବ କରୁଥିବା ବ୍ୟକ୍ତିଙ୍କୁ ଦୁର୍ଲଭ ମହାତ୍ମା କହିଛି—**'ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ'** (୭ । ୧୯) । ଏହି ସର୍ବଶ୍ରେଷ୍ଠ ସିଦ୍ଧାନ୍ତକୁ ସାଧକ ସହଜରେ ବୁଝିପାରୁ ଓ ଯଥାଶୀଘ୍ର ପରମସିଦ୍ଧି ଲାଭ କରୁ—ଏହି ଉଦ୍ଦେଶ୍ୟରେ ପ୍ରସ୍ତୁତ ପୁସ୍ତକଟି ଲେଖାଯାଇଛି ।

ଏହା ପୂର୍ବରୁ **'ବାସୁଦେବଃ ସର୍ବମ୍'** ନାମରେ ଗୋଟିଏ ପୁସ୍ତକ (ହିନ୍ଦୀ ଭାଷାରେ) ପ୍ରକାଶିତ ହୋଇସାରିଛି, କିନ୍ତୁ ତାହା ଜ୍ଞାନଯୋଗର ପ୍ରାଧାନ୍ୟରେ ଲିଖିତ । ପ୍ରସ୍ତୁତ ପୁସ୍ତକ **'ଈଶ୍ୱରମୟ ଏ ଜଗତ'** ଭକ୍ତିଯୋଗର ପ୍ରାଧାନ୍ୟରେ ଲିଖିତ । ଗୀତାରେ ମଧ୍ୟ ଭଗବାନ **'ବାସୁଦେବଃ ସର୍ବମ୍'** କଥାଟି ଭକ୍ତିଯୋଗ ଦୃଷ୍ଟିରୁ କହିଛନ୍ତି ।

ଏହି ପୁସ୍ତକଟିରେ ଉଲ୍ଲିଖିତ ବିଷୟ ବୁଦ୍ଧିର ବିଷୟ ନୁହେଁ, ଅର୍ଥାତ୍ ଏହା କେବଳ ଶିଖିବା ବା ଶିଖାଇବା ପାଇଁ ନୁହେଁ, ବରଂ ଅନୁଭବ କରାଇବା ପାଇଁ ଉଦ୍ଦିଷ୍ଟ । ଆଶା, ଭଗବଦ୍‌ପ୍ରେମୀ ସାଧକମାନଙ୍କୁ ପୁସ୍ତକଟି ଏକ ଅଲୌକିକ ଦୃଷ୍ଟିଭଙ୍ଗୀ ପ୍ରଦାନ କରିବ ।

ନିବେଦକ—

**ସ୍ୱାମୀ ରାମସୁଖଦାସ**

॥ ଶ୍ରୀହରିଃ ॥

# ସୂଚୀପତ୍ର





# ୧. ଈଶ୍ୱରମୟ ଏ ଜଗତ

## (ବାସୁଦେବଃ ସର୍ବମ୍)

ଗୀତାର ସର୍ବଶ୍ରେଷ୍ଠ ସିଦ୍ଧାନ୍ତ ହେଉଛି—'**ବାସୁଦେବଃ ସର୍ବମ୍**' ଅର୍ଥାତ୍ ସବୁକିଛି ଭଗବାନ। ସଂସାର ସମ୍ବନ୍ଧରେ ଦାର୍ଶନିକମାନଙ୍କ ମଧ୍ୟରେ ଅନେକ ମତପାର୍ଥକ୍ୟ ରହିଥାଏ। କେହି ଅଜାତବାଦକୁ ମାନନ୍ତି ତ କେହି ଦୃଷ୍ଟିସୃଷ୍ଟିବାଦକୁ ମାନନ୍ତି, କେହି ବିବର୍ତ୍ତବାଦକୁ ମାନନ୍ତି ତ କେହି ପରିଣାମବାଦକୁ ମାନନ୍ତି ଏବଂ ଆଉ କେହି ଆରମ୍ଭବାଦକୁ ମାନନ୍ତି, କିନ୍ତୁ ଗୀତା କୌଣସି ବାଦକୁ ନ ମାନି '**ବାସୁଦେବଃ ସର୍ବମ୍**'କୁ ମୁଖ୍ୟ ମନେକରେ। '**ବାସୁଦେବଃ ସର୍ବମ୍**'ରେ ସମସ୍ତ ବାଦ ଓ ମତର ପରିସମାପ୍ତି ଘଟେ। ଅହମ୍‌ର ସୂକ୍ଷ୍ମ ଅଂଶ ରହିଥିବା ପର୍ଯ୍ୟନ୍ତ ଦାର୍ଶନିକମାନଙ୍କ ମଧ୍ୟରେ ଓ ଦର୍ଶନ ମଧ୍ୟରେ ମତଭେଦ ରହିଥାଏ, କିନ୍ତୁ '**ବାସୁଦେବଃ ସର୍ବମ୍**'ରେ ଅହମ୍‌ର ସୂକ୍ଷ୍ମ ଅଂଶ ମଧ୍ୟ ରହେ ନାହିଁ। ସୁତରାଂ ସମସ୍ତ ଦାର୍ଶନିକ ତ ମହାତ୍ମା ହୋଇ ପାରନ୍ତି, କିନ୍ତୁ '**ବାସୁଦେବଃ ସର୍ବମ୍**' ଅନୁଭବ କରିଥିବା ମହାତ୍ମା ଅତ୍ୟନ୍ତ ଦୁର୍ଲଭ। ଭଗବାନ କହିଛନ୍ତି—

**ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ମାଂ ପ୍ରପଦ୍ୟତେ।**
**ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ॥**

(ଗୀତା ୭।୧୯)

"ଅନେକ ଜନ୍ମ ଶେଷରେ ଅର୍ଥାତ୍ ମନୁଷ୍ୟଜନ୍ମରେ 'ସବୁକିଛି ଭଗବାନ' ବୋଲି ଅନୁଭବ କରୁଥିବା ଜ୍ଞାନବାନ୍ ମୋର ଶରଣାପନ୍ନ ହୁଏ, ଏପରି ମହାତ୍ମା ଅତ୍ୟନ୍ତ ଦୁର୍ଲଭ।"

କର୍ମଯୋଗୀ, ଜ୍ଞାନଯୋଗୀ, ଧ୍ୟାନଯୋଗୀ, ଲୟଯୋଗୀ, ହଠଯୋଗୀ, ରାଜଯୋଗୀ, ମନ୍ତ୍ରଯୋଗୀ, ଅନାସକ୍ତଯୋଗୀ ପ୍ରଭୃତି ନାମରେ ଅନେକ ପ୍ରକାରର ଯୋଗୀ ଅଛନ୍ତି, ଯେଉଁମାନେ କି ନିଜ ନିଜ ଯୋଗରେ ସିଦ୍ଧିଲାଭ କରିଛନ୍ତି, ମୁକ୍ତ ହୋଇ ସାରିଛନ୍ତି; କିନ୍ତୁ ଭଗବାନ ସେମାନଙ୍କୁ ଦୁର୍ଲଭ କହି ନାହାନ୍ତି। କେବଳ 'ସବୁକିଛି ବାସୁଦେବ' ବୋଲି ଅନୁଭବ କରୁଥିବା ମହାତ୍ମାଙ୍କୁ ଭଗବାନ ଦୁର୍ଲଭ କହିଛନ୍ତି ଏବଂ ନିଜେ ସୁଲଭ ବୋଲି କହିଛନ୍ତି—

**ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।**
**ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ॥**

(ଗୀତା ୮ । ୧୪)

''ହେ ପାର୍ଥ! ଅନନ୍ୟଚିତ୍ତ ହୋଇ ଯେଉଁ ମନୁଷ୍ୟ ମୋତେ **ସ୍ମରଣ** କରେ, ସେହି ନିତ୍ୟଯୁକ୍ତ ଯୋଗୀ ପାଇଁ ମୁଁ ସୁଲଭ ।''

ତାତ୍ପର୍ଯ୍ୟ ହେଲା, ଭଗବାନ **'ବାସୁଦେବଃ ସର୍ବମ୍'**ର ଅନୁଭବ **କରୁଥିବା** ମହାତ୍ମାଙ୍କୁ ଦୁର୍ଲଭ କହିଛନ୍ତି ଏବଂ ନିଜକୁ ସୁଲଭ କହିଛନ୍ତି । କେହି ଜଣେ ସନ୍ଥ କହିଛନ୍ତି—

**ହରି ଦୁରଲଭ ନହିଁ ଜଗତ ମେଁ, ହରିଜନ ଦୁରଲଭ ହୋୟ ।**
**ହରି ହେର୍ୟାଁ ସବ ଜଗ ମିଲୈ, ହରିଜନ କହିଁ ଏକ ହୋୟ ॥**

ସଂସାରରେ ଭଗବାନ ଦୁର୍ଲଭ ନୁହନ୍ତି, ବରଂ ମହାତ୍ମା ଦୁର୍ଲଭ । ଏଭଳି କୌଣସି ସ୍ଥାନ, କାଳ, ବସ୍ତୁ, ବ୍ୟକ୍ତି, ଅବସ୍ଥା, ପରିସ୍ଥିତି ଓ ଘଟଣା ନାହିଁ, ଯେଉଁଥିରେ ଭଗବାନ ପରିପୂର୍ଣ୍ଣ ହୋଇ ନ ଥିବେ । ଭଗବାନ ସର୍ବତ୍ର ପରିପୂର୍ଣ୍ଣ, କିନ୍ତୁ ଭଗବାନଙ୍କର ପ୍ରେମୀ ଭକ୍ତ ସର୍ବତ୍ର ମିଳନ୍ତି ନାହିଁ । ଏଣୁ କୁହାଯାଇଛି—

**ହରି ସେ ତୂ ଜନି ହେତ କର, କର ହରିଜନ ସେ ହେତ ।**
**ହରି ରୀଝେଁ ଜଗ ଦେତ ହେଁ, ହରିଜନ ହରି ହୀ ଦେତ ॥**

ଭଗବାନ ଖୁସୀ ହୋଇଗଲେ ଜୀବକୁ ମାନବଶରୀର ପ୍ରଦାନ କରନ୍ତି । ସେହି ମାନବଶରୀର ଦ୍ୱାରା ଜୀବ ନରକ, ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତ କରିପାରେ; ଜ୍ଞାନ, ବୈରାଗ୍ୟ ଓ ଭକ୍ତି ମଧ୍ୟ ଲାଭ କରିପାରେ*; ଏବଂ ଚଉରାଶୀ ଲକ୍ଷ ଯୋନିକୁ ମଧ୍ୟ ଯାଇପାରେ । କିନ୍ତୁ ଭଗବାନଙ୍କର ଭକ୍ତ କଦାପି ନରକ, ସ୍ୱର୍ଗ ପ୍ରଭୃତିକୁ ପ୍ରେରଣ କରନ୍ତି ନାହିଁ, ବରଂ ସେ ଭଗବାନଙ୍କ ସହିତ ସାକ୍ଷାତ କରାଇ ଦିଅନ୍ତି! ଏପରି ଭକ୍ତମାନଙ୍କର ସ୍ୱରୂପ ବିଷୟରେ ଗୀତାରେ କୁହାଯାଇଛି ଯେ ସେ **'ବାସୁଦେବଃ ସର୍ବମ୍'**ରୂପକ ଜ୍ଞାନସମ୍ପନ୍ନ ।

କୌଣସି ଆମ୍ବ ବଗିଚାରେ ଅନ୍ୟ ଋତୁରେ ଆମ୍ବ ଫଳ ନ ଥିଲେ ମଧ୍ୟ ତାହାକୁ ଆମ୍ବବଗିଚା ହିଁ କୁହାଯାଏ । ଅନ୍ୟ ଋତୁରେ ପିଜୁଳି ବଗିଚାରେ ପିଜୁଳି ଦେଖିବାକୁ ମିଳୁ ନ ଥିଲେ ମଧ୍ୟ ତାହାକୁ ପିଜୁଳିବଗିଚା ହିଁ କୁହାଯାଏ । ସବୁଜ ଧାନକିଆରିରେ ଗୋଟିଏ ବି ଧାନ ଦେଖିବାକୁ ମିଳୁ ନ ଥିଲେ ମଧ୍ୟ ତାହାକୁ

---

* ନର ତନ ସମ ନହିଁ କଵନିଉ ଦେହୀ । ଜୀଵ ଚରାଚର ଜାଚତ ତେହୀ ॥
ନରକ ସ୍ୱର୍ଗ ଅପବର୍ଗ ନିସେନୀ । ଗ୍ୟାନ ବିରାଗ ଭଗତି ସୁଭ ଦେନୀ ॥
(ମାନସ, ଉତ୍ତର. ୧୨୧ । ୫)

ଧାନକିଆରି ହିଁ କୁହାଯାଏ। ଏହାର କାରଣ ହେଲା, ପୂର୍ବରୁ ଆମ୍ବ ଟାକୁଆ ପୋତା ହୋଇଥିଲା, ତା'ପରେ ସେଥିରୁ ଗଛ ଉଠିଲା ଏବଂ ଶେଷକୁ ସେଥିରେ ଆମ୍ବ ହିଁ ଫଳିବ। ଏଣୁ ମଝିରେ ମଧ୍ୟ ସେହି ବଗିଚ୍ଚ ଆମ୍ବବଗିଚ୍ଚ ବୋଲାଏ। ଆରମ୍ଭରେ ପିଜୁଳି ମଞ୍ଜି ପୋତା ହୋଇଥିଲା ଏବଂ ଶେଷକୁ ମଧ୍ୟ ଗଛରେ ପିଜୁଳି ଫଳିବ, ସେଥିପାଇଁ ମଧ୍ୟବର୍ତ୍ତୀ କାଳରେ ମଧ୍ୟ ତାହା ପିଜୁଳିବଗିଚ୍ଚ ବୋଲାଏ। ପ୍ରଥମେ ଧାନ ବୁଣା ହୋଇଥିଲା ଏବଂ ଶେଷକୁ ମଧ୍ୟ ଧାନ ଫଳିବ, ତେଣୁ ମଝିରେ ବି ତାହା ଧାନଗଛ ବୋଲାଏ। ଗୀତାରେ ଭଗବାନ ନିଜକୁ ସଂସାରର ସନାତନ ବୀଜ ଏବଂ ଅବ୍ୟୟ ବୀଜ ବୋଲି କହିଛନ୍ତି—

**ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍।** (୭।୧୦)
**ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍॥** (୯।୧୮)

ଭଗବାନ କହିଛନ୍ତି—

**ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ।**
**ତାସାଂ ବ୍ରହ୍ମ ମହଦ୍‌ଯୋନିରହଂ ବୀଜପ୍ରଦଃ ପିତା॥**

(ଗୀତା ୧୪।୪)

"ହେ କୌନ୍ତେୟ! ସମସ୍ତ ଯୋନିରେ ପ୍ରାଣୀମାନଙ୍କର ଯେତେ ପ୍ରକାର ଶରୀର ସୃଷ୍ଟି ହୁଏ, ସେସବୁର (ବ୍ୟଷ୍ଟି ଶରୀରଗୁଡ଼ିକର) ମାତା ହେଉଛି ମୂଳ ପ୍ରକୃତି ଏବଂ ମୁଁ ହେଉଛି ବୀଜ ସ୍ଥାପନକାରୀ ପିତା।"

ଉତ୍ପତ୍ତିର ଉତ୍ସ ଦୃଷ୍ଟିରୁ ପ୍ରାଣୀମାନେ ଚାରି ଭାଗରେ ବିଭକ୍ତ—(୧) **ଜରାୟୁଜ**—ଜରାୟୁରୁ ଜାତ ମନୁଷ୍ୟ, ଗାଈ, ମଇଁଷି, ଛେଳି, ମେଣ୍ଢା, କୁକୁର ଇତ୍ୟାଦି; (୨) **ଅଣ୍ଡଜ**—ଅଣ୍ଡାରୁ ଜାତ ପକ୍ଷୀ, ସାପ, ଗୁଣ୍ଡୁଚିମୂଷା, ଝିଟିପିଟି ଇତ୍ୟାଦି; (୩) **ଉଦ୍ଭିଜ**—ମାଟିକୁ ଭେଦ କରି ଅଙ୍କୁରିତ ହେଉଥିବା ଗଛ, ଲତା, ଗୁଳ୍ମ, ଘାସ, ଇତ୍ୟାଦି; ଏବଂ (୪) **ସ୍ୱେଦଜ**—ଝାଳରୁ ସୃଷ୍ଟି ହେଉଥିବା ଉକୁଣି, ନିଖ ଇତ୍ୟାଦି। ଏହି ଚାରୋଟି ସ୍ଥାନରୁ ଚଉରାଶୀ ଲକ୍ଷ ଯୋନିର ପ୍ରାଣୀମାନେ ଉତ୍ପନ୍ନ ହୁଅନ୍ତି। ଏମାନେ ମୋଟ ଉପରେ ଦୁଇଟି ଶ୍ରେଣୀରେ ବିଭକ୍ତ—ସ୍ଥାବର ଓ ଜଙ୍ଗମ। ବୃକ୍ଷ, ଲତା, ଦୂବ, ଘାସ ଆଦି ଗୋଟିଏ ସ୍ଥାନରେ ଅଚଳଭାବେ ରହୁଥିବା ଜୀବ **'ସ୍ଥାବର'** ଏବଂ ମନୁଷ୍ୟ, ପଶୁ, ପକ୍ଷୀ ପ୍ରଭୃତି ବିଚରଣ କରୁଥିବା ଜୀବ **'ଜଙ୍ଗମ'** ଅଟନ୍ତି। ଏହି ଜୀବମାନଙ୍କ ମଧ୍ୟରୁ କେତେକ ଜଳରେ ରହନ୍ତି, କେତେକ ପୃଥିବୀପୃଷ୍ଠରେ ରହନ୍ତି ଏବଂ ଆଉ କେତେକ ଆକାଶରେ ବିଚରଣ କରନ୍ତି—

**ଜଳଚର ଥଳଚର ନଭଚର ନାନା । ଜେ ଜଡ଼ ଚେତନ ଜୀଵ ଜହାନା ॥**

(ମାନସ, ବାଳ. ୩ । ୨)

ଏହି ଚଉରାଶୀ ଲକ୍ଷ ଯୋନି ବ୍ୟତୀତ ଦେବତା, ପିତୃପୁରୁଷ, ଗନ୍ଧର୍ବ, ଭୂତ, ପ୍ରେତ, ପିଶାଚ, ବ୍ରହ୍ମରାକ୍ଷସ, ବାଳଗ୍ରହ ପ୍ରଭୃତି ଅନ୍ୟ କେତେକ ଯୋନି ମଧ୍ୟ ରହିଛି । ଏ ସମସ୍ତ ଯୋନିର ବୀଜ ହେଉଛନ୍ତି ଭଗବାନ—

**ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।**
**ନ ତଦସ୍ତି ବିନା ଯତ୍ସ୍ୟାନ୍ମୟା ଭୂତଂ ଚରାଚରମ୍ ॥**

(ଗୀତା ୧୦ । ୩୯)

"ହେ ଅର୍ଜୁନ! ମୁଁ ହେଉଛି ସମସ୍ତ ପ୍ରାଣୀଙ୍କର ବୀଜ । କାରଣ ମୋ ବିନା କୌଣସି ଚର ବା ଅଚର ପ୍ରାଣୀ ନାହିଁ ଅର୍ଥାତ୍ ଚର ଓ ଅଚର ସବୁକିଛି ମୁଁ ହିଁ ଅଟେ ।"

**ଏତନ୍ନାନାବତାରାଣାଂ ନିଧାନଂ ବୀଜମବ୍ୟୟମ୍ ।**
**ଯସ୍ୟାଂଶାଂଶେନ ସୃଜ୍ୟନ୍ତେ ଦେବତିର୍ଯଙ୍ନରାଦୟଃ ॥**

(ଶ୍ରୀମଦ୍ଭା. ୧ । ୩ । ୫)

"ଭଗବାନ ନାରାୟଣ ହିଁ ଅନେକ ଅବତାରର ଅବ୍ୟୟ ବୀଜ ଅଟନ୍ତି । ଏହାଙ୍କର କ୍ଷୁଦ୍ରାତିକ୍ଷୁଦ୍ର ଅଂଶରୁ ଦେବତା, ପଶୁ, ପକ୍ଷୀ ଓ ମନୁଷ୍ୟାଦି ଯୋନିର ଉତ୍ପତ୍ତି ହୁଏ ।"

ଅନନ୍ତ ବ୍ରହ୍ମାଣ୍ଡରେ ଅନନ୍ତ ଜୀବ ଅଛନ୍ତି, କିନ୍ତୁ ସମସ୍ତଙ୍କର ମୂଳବୀଜ ଗୋଟିଏ । ଅଭିପ୍ରାୟ ହେଲା ଯେ ଯାହା କିଛି ଦେଖିବା, ଶୁଣିବା ଓ ଚିନ୍ତନ କରିବାର ପରିସରଭୁକ୍ତ ହେଉଛି, ସେସବୁ ଭଗବାନ ହିଁ ଅଟନ୍ତି—**'ବାସୁଦେବଃ ସର୍ବମ୍'** । ସଂସାରର ଆରମ୍ଭରେ ମଧ୍ୟ ଭଗବାନ ଥିଲେ ଏବଂ ଶେଷରେ ମଧ୍ୟ ଭଗବାନ ରହିବେ, ପୁଣି ମଝିରେ ଅନ୍ୟ ଜିନିଷ କେଉଁଠୁ ଆସିବ? ଭଗବାନ କହିଛନ୍ତି—

**ଅହମେବାସମେବାଗ୍ରେ ନାନ୍ୟଦ୍ ଯତ୍ସଦସତ୍ପରମ୍ ।**
**ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟେତ ସୋଽସ୍ମ୍ୟହମ୍ ॥**

(ଶ୍ରୀମଦ୍ଭା. ୨ । ୯ । ୩୨)

"ସୃଷ୍ଟି ପୂର୍ବରୁ ମଧ୍ୟ ମୁଁ ଥିଲି, ମୋ ବ୍ୟତୀତ ଅନ୍ୟ କିଛି ନ ଥିଲା ଏବଂ ସୃଷ୍ଟିସର୍ଜନା ପରେ ଦୃଶ୍ୟବର୍ଗରୂପରେ ଯାହା କିଛି ଦେଖାଯାଉଛି, ତାହା ମଧ୍ୟ ମୁଁ ହିଁ ଅଟେ । ସତ୍, ଅସତ୍ ଓ ସତ୍-ଅସତ୍‌ରୁ ପରେ ଯାହା କିଛି ଅଛି, ସେସବୁ ମୁଁ ହିଁ ଅଟେ ତଥା ସୃଷ୍ଟି ପରେ ମଧ୍ୟ ମୁଁ ହିଁ ରହିବି

ଏବଂ ଏସବୁର ବିନାଶ ହୋଇଗଲା ପରେ ଯାହା କିଛି ବାକି ରହେ, ତାହା ମଧ୍ୟ ମୁଁ ହିଁ ଅଟେ।''

ଏଣୁ ଭଗବାନ ହିଁ ସଂସାର ରୂପରେ ଦୃଶ୍ୟ ହେଉଛନ୍ତି। ଯେପରି ମଝି ସମୟରେ ଧାନ ଫସଲ ଘାସପରି ଦେଖାଯାଏ। ଯଦି କୌଣସି ନ ଜାଣିଥିବା ଲୋକକୁ ଧାନ କିଆରି ଦେଖାଇ ତାହାକୁ ଧାନ ବୋଲି କୁହାଯାଏ, ତେବେ ସେ କହିବ ଯେ—''ତୁମେ କଣ ମୋତେ ଠକିବାକୁ ଚାହୁଁଛ? ମୁଁ କଣ ଧାନ କିଣିନି? ମୁଁ ପରା ବସ୍ତା ବସ୍ତା ଧାନ କିଣାବିକା କରିଛି ! ଧାନ କଣ ଏମିତିକା? ଏହା ତ କେବଳ ଘାସ।'' କିନ୍ତୁ ଜାଣିଥିବା ଲୋକକୁ ତାହା ଘାସ ଭଳି ଦେଖା ନ ଯାଇ ଧାନ ଭଳି ଦେଖାଯାଏ। ସେହିପରି ଅଜ୍ଞ ଲୋକେ କହନ୍ତି ଯେ ''ଏମାନେ ତ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା, ପାହାଡ଼ ଇତ୍ୟାଦି। ଏମାନଙ୍କୁ ଭଗବାନ କେମିତି କହୁଛ? ଏମାନେ ଭଗବାନ କେମିତି ହେଲେ ! ଏହା ତ ସଂସାର। ଈଶ୍ୱରଙ୍କୁ କଣ କେହି ଦେଖିଛି?'' କିନ୍ତୁ ଅନୁଭବୀ ଲୋକକୁ ସଂସାର ଦେଖା ନ ଯାଇ ଭଗବାନ ହିଁ ଦେଖାଯାଆନ୍ତି। ତାଙ୍କ ଦୃଷ୍ଟିରେ ସବୁକିଛି ଭଗବାନ ହିଁ ହୋଇଥାନ୍ତି—**'ବାସୁଦେବଃ ସର୍ବମ୍'**।

ଆମ୍ବବଗିଚ୍ଚରେ ଦେଖିଲେ ଆମ୍ବ ଟାକୁଆରୁ ହିଁ ଗଛ ହୁଏ ଏବଂ ଶେଷରେ ଫଳରୂପେ ଆମ୍ବ ହିଁ ଫଳେ। ଫଳକୁ ଖିଆଯାଏ ଏବଂ ଶେଷକୁ ଟାକୁଆ ବଳିପଡ଼େ। ବଗିଚ୍ଚରେ ଯେଉଁ ଗଛ ଦେଖାଯାଏ, ତାହା ଟାକୁଆର ହିଁ ବିକୃତି। ବିକୃତିକୁ ଦେଖିଲେ ବୃକ୍ଷ ଦେଖାଯାଏ ଏବଂ ମୂଳ ତତ୍ତ୍ୱକୁ ଦେଖିଲେ ଟାକୁଆ ଦେଖାଯାଏ। ସେହିପରି ବିକୃତିକୁ ଦେଖିଲେ ସଂସାର* ଏବଂ ମୂଳତତ୍ତ୍ୱକୁ ଦେଖିଲେ ପରମାତ୍ମା ବିଦ୍ୟମାନ। ବିକୃତିକୁ ଦେଖିବା ଭୁଲ୍; କାରଣ ଶେଷକୁ ବିକୃତି ରହିବ ନାହିଁ, କେବଳ ମୂଳତତ୍ତ୍ୱ ହିଁ ରହିବ। ଏଣୁ ବିକୃତିକୁ ନ ଦେଖି ମୂଳ ତତ୍ତ୍ୱକୁ ଦେଖିବା ପରମାତ୍ମଦୃଷ୍ଟି ଅଟେ। ପରମାତ୍ମଦୃଷ୍ଟିରେ ଏକମାତ୍ର ପରମାତ୍ମା ହିଁ ଦୃଶ୍ୟ ହୁଅନ୍ତି—**ବାସୁଦେବଃ ସର୍ବମ୍'**।

ଏକମାତ୍ର ଜଳ ହିଁ ବରଫ, କୁହୁଡ଼ି, ବାଦଲ, କୁଆପଥର, ବର୍ଷା, ନଈ, ପୋଖରୀ, ସମୁଦ୍ର ଇତ୍ୟାଦି ରୂପ ଧାରଣ କରେ। କଡ଼େଇରେ ବରଫ ରଖି ଗରମ କଲେ ତାହା ତରଳି ପାଣି ହୋଇଯିବ। ତା'ପରେ ପାଣି ବାଷ୍ପ ହୋଇଯିବ ଏବଂ ବାଷ୍ପ ପରମାଣୁ ହୋଇ ନିରାକାର ହୋଇଯିବ। ଜଳ ହିଁ

---

* ସଂସାରକୁ ସତ୍ତା ଓ ମହତ୍ତ୍ୱ ଦେଉଥିବାରୁ ଏହାକୁ ବିକୃତି କୁହାଯାଇଛି। ଅସତ୍ ସଂସାରରୂପରେ ଏହାକୁ ସତ୍ତା ଓ ମହତ୍ତ୍ୱ ନ ଦେଲେ ଏହା ଚିନ୍ମୟ ଭଗବତ୍‌ସ୍ୱରୂପ ବୋଲି ଅନୁଭବ ହୁଏ।

କୁହୁଡ଼ିରୂପ ଧାରଣ କରେ ଏବଂ ତାହା ହିଁ ବାଦଲ, କୁଆପଥର ଓ ବର୍ଷା ରୂପରେ ପୃଥିବୀପୃଷ୍ଠକୁ ଆସେ ଏବଂ ନଦୀ ଓ ସମୁଦ୍ର ରୂପ ଧାରଣ କରେ। ଅନେକ ରୂପ ଧାରଣ କରୁଥିଲେ ମଧ୍ୟ ଜଳ ତତ୍ତ୍ୱତଃ ଏକ ଅଟେ । ସେହିପରି ଭଗବାନ ଅନେକ ରୂପରେ ପ୍ରକଟିତ ହୋଇଯାଆନ୍ତି । ଜଳ ଥଣ୍ଡା ପାଇଲେ ଜମାଟ ବାନ୍ଧି ବରଫ ପାଲଟିଯାଏ ଏବଂ ଗରମ ପାଇଲେ ତରଳି ଓ ବାଷ୍ପରେ ପରିଣତ ହୋଇ ପରମାଣୁ ହୋଇଯାଏ । ସେହିପରି ଅଜ୍ଞାନରୂପୀ ଥଣ୍ଡା ଯୋଗୁଁ ଭଗବାନ ସ୍ଥୂଳ ସଂସାର ଭଳି ଦେଖାଯାଆନ୍ତି ଏବଂ ଜ୍ଞାନରୂପୀ ଅଗ୍ନି ଦ୍ୱାରା ସୂକ୍ଷ୍ମ ହୋଇ **'ବାସୁଦେବଃ ସର୍ବମ୍'** ଭାବରେ ଦୃଶ୍ୟ ହୁଅନ୍ତି । ଜଳ ବରଫରୂପରେ ଦେଖାଯାଉ ବା ବାଷ୍ପ, ବାଦଲ ଆଦି ରୂପରେ ଦେଖାଯାଉ, ତାହା ଜଳ ହିଁ ଅଟେ । ଜଳ ବ୍ୟତୀତ ଆଉ କିଛି ନୁହେଁ । ସେହିପରି ଭଗବାନ ସଂସାରରୂପରେ ଦେଖାଯାଆନ୍ତୁ ବା ଅନ୍ୟ କୌଣସି ରୂପରେ ଦେଖାଯାଆନ୍ତୁ, ସେ ଭଗବାନ ହିଁ ଅଟନ୍ତି । ଆମ ଆଖି ଓ ସୂର୍ଯ୍ୟଙ୍କ ମଝିରେ କିଛି ନ ଥିବା ଭଳି ଦେଖାଯାଏ, କିନ୍ତୁ ସେଠାରେ ମଧ୍ୟ ପରମାଣୁ ରୂପରେ ଜଳ ପରିପୂର୍ଣ୍ଣ ଥାଏ । ସୁତରାଂ ଯାହା ଦୃଷ୍ଟିଗୋଚର ହେଉଛି, ତାହା ମଧ୍ୟ ଭଗବାନ ଏବଂ ଯାହା ଦୃଷ୍ଟିଗୋଚର ହେଉ ନାହିଁ, ତାହା ମଧ୍ୟ ଭଗବାନ—**'ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍'** (ଗୀତା ୧୧ । ୩୭) । ସର୍ବତ୍ର ଭଗବାନ ହିଁ ପରିପୂର୍ଣ୍ଣ—**'ବାସୁଦେବଃ ସର୍ବମ୍'** ।

ଧରାଯାଉ ଆମର ହରିଦ୍ୱାର କଥା ମନେ ପଡ଼ିଲା । ତେବେ ସେ ସମୟରେ ମନରେ 'ହରିକୀ ପୈଡ଼ୀ' ଦେଖାଯାଏ, ସେଠାରେ ଲୋକେ ସ୍ନାନ କରୁଥିବାର ଦେଖାଯାଆନ୍ତି, ଗଙ୍ଗା ପ୍ରବାହିତ ହେଉଥିବାର ଦେଖାଯାଏ, ସେଥିରେ ମାଛମାନେ ସନ୍ତରଣ କରୁଥିବାର ଦେଖାଯାଆନ୍ତି ଇତ୍ୟାଦି । ଏସବୁ ହେଉଛି ମନର ସୃଷ୍ଟି । ମନ ହିଁ ଏସବୁ ରୂପ ଧାରଣ କରେ । ମନରୁ ହରିଦ୍ୱାରର ଚିନ୍ତନ ବିସ୍ମୃତ ହେବାମାତ୍ରେ ଏସବୁ ରହେ ନାହିଁ, ଏକମାତ୍ର ମନ ହିଁ ରହିଯାଏ । ସେହିପରି ଭଗବାନ **'ବହୁ ସ୍ୟାଂ ପ୍ରଜାୟେୟ'** ସଙ୍କଳ୍ପ କଲେ । ଏଭଳି ସଙ୍କଳ୍ପ କରିବାରୁ ସେ ନିଜେ ହିଁ ସଂସାରରୂପରେ ପ୍ରକଟିତ ହୋଇଗଲେ । ସଙ୍କଳ୍ପ ଛାଡ଼ିଦେବା ପରେ ସଂସାର ରହିବ ନାହିଁ, କେବଳ ଭଗବାନ ହିଁ ରହିବେ । ଅତଏବ ଏକମାତ୍ର ଭଗବାନ ହିଁ ଅନେକ ରୂପରେ ପ୍ରକଟିତ ହୋଇଛନ୍ତି—**'ବାସୁଦେବଃ ସର୍ବମ୍'** ।

ଚିନିରେ ବିଭିନ୍ନ ଆକୃତିର ଖେଳଣା ସଦୃଶ ମିଠାଇ ତିଆରି କରାଯାଏ । ସେହି ମିଠାଇରେ ଚିନି ବ୍ୟତୀତ ଆଉ କିଛି ନ ଥାଏ । ଚିନିରେ ଘୋଡ଼ା ତିଆରି ହୋଇଥାଏ, ଚଢ଼େଇ ତିଆରି ହୋଇଥାଏ ଓ ଘର ମଧ୍ୟ ତିଆରି

ହୋଇଥାଏ, କିନ୍ତୁ ତରଳାଇ ଦେଲେ ସବୁଯାକ ଏକାକାର ହୋଇଯାଏ। ସୁନାରେ ଅନେକ ଗହଣା ତିଆରି ହୋଇଥାଏ। ସେଥିରୁ କେତେକ ଗୋଡ଼ରେ ପିନ୍ଧାଯାଏ, କେତେକ ଅଣ୍ଟାରେ ପିନ୍ଧାଯାଏ, କେତେକ ବେକରେ ପିନ୍ଧାଯାଏ ଏବଂ ଆଉ କେତେକ ହାତରେ ପିନ୍ଧାଯାଏ। ସେହି ଗହଣାଗୁଡ଼ିକର ନାମ, ରଙ୍ଗ, ଆକୃତି, ଉପଯୋଗ, ଓଜନ ଓ ମୂଲ୍ୟ ଭିନ୍ନ ଭିନ୍ନ। କିନ୍ତୁ ସେଗୁଡ଼ିକରେ ଏକମାତ୍ର ସୁନା ବ୍ୟତୀତ ଆଉ କିଛି ନ ଥାଏ। ସେହିଭଳି ଅନେକ ପ୍ରକାରର ସୃଷ୍ଟି ଦେଖାଯାଉଥିଲେ ମଧ୍ୟ ଏକମାତ୍ର ଭଗବାନଙ୍କ ବ୍ୟତୀତ ଆଉ କିଛି ନାହିଁ। ସାରାଂଶ ହେଲା, ଯେପରି ଜଳ ଦ୍ୱାରା ତିଆରି ହୋଇଥିବା ଜିନିଷ ଜଳ, ଚିନିରେ ତିଆରି ଜିନିଷ ଚିନି ଓ ସୁନାରେ ତିଆରି ଗହଣା ସୁନା ଅଟେ, ସେହିପରି ଭଗବାନଙ୍କ ଠାରୁ ସୃଷ୍ଟ ସମଗ୍ର ସଂସାର ଭଗବାନ ହିଁ ଅଟନ୍ତି—**'ବାସୁଦେବଃ ସର୍ବମ୍'।**

**ଈଶ୍ୱରମୟ ଏ ଜଗତ ଭଲ ମନ୍ଦ ନାହିଁ କେହି।**
**ଯେମନ୍ତ ଯାହାର ଭାବନା ଥାଇ ସେହିପରି ଫଳ ହୋଇ॥**

ଜଣେ ବୈରାଗୀ ବାବା ଥିଲେ। ତାଙ୍କ ପାଖରେ ସୁନାର ଦୁଇଟି ମୂର୍ତ୍ତି ଥିଲା—ଗୋଟିଏ ଗଣେଶ ଏବଂ ଅନ୍ୟଟି ମୂଷା। ଦୁଇଟିଯାକ ମୂର୍ତ୍ତି ଓଜନରେ ସମାନ ଥିଲା। ବାବାଙ୍କର ରାମେଶ୍ୱର ଯିବାର ଥିଲା। ପାଖରେ ପଇସା ନ ଥାଏ। ତେଣୁ ସେ ବଣିଆ ପାଖକୁ ଯାଇ କହିଲେ—ବାବୁ, ଏଇ ମୂର୍ତ୍ତି ଦୁଇଟି ବଦଳରେ କେତେ ପଇସା ଦେବ? ବଣିଆ ମୂର୍ତ୍ତି ଦୁଇଟିକୁ ତଉଲି ଗୋଟିକୁ ପାଞ୍ଚ ଶହ ଟଙ୍କା ଲେଖାଏଁ କହିଲା ଅର୍ଥାତ୍ ଦୁଇଟିର ଦାମ୍ ସମାନ କହିଲା। ବାବା କହିଲେ—ଆରେ! ତୁମକୁ ଦେଖାଯାଉନି, ଜଣେ ମାଲିକ ଆଉ ଜଣେ ତାଙ୍କର ବାହନ। ମାଲିକର (ଗଣେଶଙ୍କର) ଦାମ୍ ଯେତିକି ତାଙ୍କ ବାହନ (ମୂଷା)ର ଦାମ ସେତିକି ! ଏ କି କଥା? ବଣିଆ କହିଲା—ବାବା! ମୁଁ ଗଣେଶ ଓ ମୂଷାର ଦାମ୍ କହୁ ନାହିଁ, ମୁଁ ତ ସୁନାର ଦାମ୍ କହୁଛି।

ସନ୍ଥ ଏକନାଥ ଭାଗବତର ଏକାଦଶ ସ୍କନ୍ଧ ଉପରେ ମରାଠୀ ଭାଷାରେ ଟୀକା ଲେଖିଛନ୍ତି। ସେଥିରେ ସେ କହିଛନ୍ତି—ସମାନ ଓଜନର ସୁନାରେ ତିଆରି ଗୋଟିଏ ବିଷ୍ଣୁଙ୍କର ମୂର୍ତ୍ତି ଏବଂ ଗୋଟିଏ କୁକୁରର ମୂର୍ତ୍ତି—ଉଭୟର ଦାମ୍ ସମାନ ହେବ। ବିଷ୍ଣୁ ଭଗବାନ ଶ୍ରେଷ୍ଠ ଓ ପୂଜ୍ୟ, ଅଥଚ କୁକୁର ନୀଚ (ଅସ୍ପୃଶ୍ୟ) ଓ ଅପୂଜ୍ୟ। କିନ୍ତୁ ଓଜନରେ ଦୁଇଟିଯାକ ସମାନ ହୋଇଥିବାରୁ ଉଭୟର

ମୂଲ୍ୟ ସମାନ ହେବ*। ବାହ୍ୟ ଦୃଷ୍ଟିରୁ ଦେଖିଲେ ଉଭୟ ମଧ୍ୟରେ ଅନେକ ପାର୍ଥକ୍ୟ ଅଛି, କିନ୍ତୁ ସୁନା ଦୃଷ୍ଟିରୁ ଦେଖିଲେ କୌଣସି ପାର୍ଥକ୍ୟ ନାହିଁ! ସେହିପରି ସଂସାରରେ କେହି ମହାତ୍ମା ତ ଆଉ କେହି ଦୁରାତ୍ମା, କେହି ସଜ୍ଜନ ତ ଆଉ କେହି ଦୁର୍ଜନ, କେହି ସଦାଚାରୀ ତ ଆଉ କେହି ଦୁରାଚାରୀ, କେହି ଧର୍ମାତ୍ମା ତ ଆଉ କେହି ପାପାତ୍ମା, କେହି ବିଦ୍ୱାନ୍ ତ ଆଉ କେହି ମୂର୍ଖ—ଏହା ବାହ୍ୟଦୃଷ୍ଟି; କିନ୍ତୁ ତତ୍ତ୍ୱ ଦୃଷ୍ଟିରୁ ଦେଖିଲେ ଭଗବାନ ହିଁ ସବୁକିଛି ଅଟନ୍ତି। ଏକମାତ୍ର ଭଗବାନ ହିଁ ଅନେକ ରୂପ ଧାରଣ କରିଛନ୍ତି। ଚିହ୍ନିବାଲୋକ ତାଙ୍କୁ ଠିକ୍‌ଭାବେ ଚିହ୍ନିଯାଏ, ସମସ୍ତେ ଚିହ୍ନି ପାରନ୍ତି ନାହିଁ। ଧରାଯାଉ ଆମ୍ବବଗିଚାରେ ଖାଲି ଆମ୍ବ ଗଛ ଠିଆ ହୋଇଛି, ସେଥିରେ ଗୋଟିଏ ବି ଆମ୍ବ ନାହିଁ, ତଥାପି ଜାଣିଥିବା ଲୋକ ଦୃଷ୍ଟିରେ ସେସବୁ ଆମ୍ବ ହିଁ ଅଟେ। ସେ ତାହାକୁ ଆମ୍ବବଗିଚା ବୋଲି କହେ। ସେହିପରି ମହାତ୍ମାଙ୍କ ଦୃଷ୍ଟିରେ ସବୁକିଛି ଭଗବାନ। କାରଣ ତତ୍ତ୍ୱଜ୍ଞ ମହାତ୍ମା ସମଦର୍ଶୀ ହୋଇଥାନ୍ତି—

**ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ॥**

(ଗୀତା ୫।୧୮)

"ମହାତ୍ମାମାନେ ବିଦ୍ୟାବିନୟସମ୍ପନ୍ନ ବ୍ରାହ୍ମଣଠାରେ ଓ ଚଣ୍ଡାଳଠାରେ ତଥା ଗାଈ, ହାତୀ ଓ କୁକୁରଠାରେ ମଧ୍ୟ ସମରୂପ ପରମାତ୍ମାଙ୍କୁ ଦର୍ଶନ କରନ୍ତି।"

**ବ୍ରାହ୍ମଣେ ପୁଲ୍କସେ ସ୍ତେନେ ବ୍ରହ୍ମଣ୍ୟେଽର୍କେ ସ୍ଫୁଲିଙ୍ଗକେ।**
**ଅକ୍ରୂରେ କ୍ରୂରକେ ଚୈବ ସମଦୃକ୍ ପଣ୍ଡିତୋ ମତଃ ॥**

(ଶ୍ରୀମଭା. ୧୧।୨୯।୧୪)

"ଯିଏ ବ୍ରାହ୍ମଣ ଓ ଚଣ୍ଡାଳ ପ୍ରତି, ବ୍ରାହ୍ମଣଭକ୍ତ ଓ ଚୋର ପ୍ରତି, ସୂର୍ଯ୍ୟ ଓ ଅଗ୍ନିର ସ୍ଫୁଲିଙ୍ଗ ପ୍ରତି ତଥା ଦୟାଳୁ ଓ କ୍ରୂର ପ୍ରତି ସମଦୃଷ୍ଟି ରଖେ, ସେହି ଭକ୍ତ ଜ୍ଞାନୀ ନାମରେ ପରିଚିତ।"

ଏଭଳି ସମରୂପ ପରମାତ୍ମାଙ୍କୁ ଦର୍ଶନ କରୁଥିବା ମହାତ୍ମା ସଂସାରକୁ ଜିଣିଯାଆନ୍ତି—

**ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ।**

(ଗୀତା ୫।୧୯)

---

* ସୁବର୍ଣ୍ଣବିଷ୍ଣୁ ସୁବର୍ଣ୍ଣଶ୍ୱାନ। ଏକ ପୂଜ୍ୟ ଏକ ହୀନ। ବିକ୍ରୀ ଜାତାଂ ମୋଲ ସମାନ। ବଂଦ୍ୟ ନିଂଦ୍ୟ ଜାଣ ଆତ୍ମତ୍ୱାଂ ତୈସେଁ॥୨୯୫॥ (ଶ୍ରୀମଭା. ୧୧।୨୯।୧୪)

''ଯାହାର ଅନ୍ତଃକରଣ ସମତାରେ ସ୍ଥିତ (ରାଗ-ଦ୍ୱେଷରହିତ), ସେ ଜୀବିତ ଅବସ୍ଥାରେ ହିଁ ସମଗ୍ର ସଂସାରକୁ ଜିଣିଯାଇଛି।'' ଅର୍ଥାତ୍ ତା'ଠାରେ ହର୍ଷ-ଶୋକ, ରାଗ-ଦ୍ୱେଷ ଆଦି ରହେ ନାହିଁ। ତାହାର ସମବୁଦ୍ଧି ସ୍ୱତଃ ଅଟଳ ହୋଇଯାଏ। ଯଦି ଏକମାତ୍ର ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ, ତେବେ ଦ୍ୱେଷ କିଏ କରିବ ଓ କାହା ଉପରେ କରିବ?

**ଉମା ଜେ ରାମ ଚରନ ରତ ବିଗତ କାମ ମଦ କ୍ରୋଧ।**
**ନିଜ ପ୍ରଭୁମୟ ଦେଖହିଁ ଜଗତ କେହି ସନ କରହିଁ ବିରୋଧ॥**

(ମାନସ, ଉତ୍ତର. ୧୧୨ ଖ)

**ପ୍ରଶ୍ନ**—ଯଦି ସବୁକିଛି ଭଗବାନ, ତେବେ ଏ ଜଡ଼-ଚେତନ, ବିନାଶୀ-ଅବିନାଶୀର ପ୍ରଭେଦ କେଉଁଠୁ ଆସିଲା?

**ଉତ୍ତର**—ଏହି ପ୍ରଭେଦ ମନୁଷ୍ୟଠାରୁ ହିଁ ଆସିଲା। ମନୁଷ୍ୟ ହିଁ ଏହି ପ୍ରଭେଦ ସୃଷ୍ଟି କରିଛି ଏବଂ ସେ ହିଁ ଏହାକୁ ଦୂର କରି ପାରିବ ତଥା ଏହାକୁ ଦୂର କରିବାର ଦାୟିତ୍ୱ ମଧ୍ୟ ମନୁଷ୍ୟର। ଭଗବାନ ଗୀତାରେ କହିଛନ୍ତି ଯେ ଜୀବ ହିଁ ଏହି ଜଗତକୁ ଧାରଣ କରିଛି—**'ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍'** (୭।୫)। ରାଗ-ଦ୍ୱେଷ ଯୋଗୁଁ ହିଁ ସଂସାର ନାଶବାନ୍ ଓ ଜଡ଼ ଦେଖାଯାଉଛି। ଅନ୍ତରରେ ରାଗ-ଦ୍ୱେଷ ନ ଥାଇ ସମତା ଥିଲେ ସଂସାର ଭଗବଦ୍‌ସ୍ୱରୂପ ଦୃଷ୍ଟିଗୋଚର ହେବ।

ବାସ୍ତବରେ ସବୁକିଛି ଚିନ୍ମୟ, କିନ୍ତୁ ରାଗ-ଦ୍ୱେଷ ହେତୁ ଏହା ଜଡ଼ ଓ ଲୌକିକ ଦେଖାଯାଉଛି। ରାଗ-ଦ୍ୱେଷ ନ ଥିଲେ ଏକମାତ୍ର ଚିନ୍ମୟ ତତ୍ତ୍ୱ (ଭଗବାନଙ୍କ) ବ୍ୟତୀତ ଆଉ କିଛି ନାହିଁ। ଜଡ଼-ଚେତନ, ସ୍ଥାବର-ଜଙ୍ଗମ, ବିନାଶୀ-ଅବିନାଶୀ ସବୁକିଛି ଏକମାତ୍ର ଭଗବାନ। ପ୍ରଭେଦ କେବଳ ରାଗ-ଦ୍ୱେଷ ଯୋଗୁଁ ଉତ୍ପନ୍ନ ହୋଇଛି। ରାଗ-ଦ୍ୱେଷର କାରଣ ହେଉଛି ମୋହ ବା ଅଜ୍ଞାନ—

**'ମୋହ ସକଲ ବ୍ୟାଧିନ୍ହ କର ମୂଲା।'**

(ମାନସ, ଉତ୍ତର. ୧୨୧।୧୫)

ମୋହ ନଷ୍ଟ ହୋଇଗଲେ 'ସବୁକିଛି ଭଗବାନ'—ଏହି ସ୍ମୃତି ଲାଭ ହୁଏ—**'ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା'** (ଗୀତା ୧୮।୭୩)। ଏଣୁ **'ବାସୁଦେବଃ ସର୍ବମ୍'** ସ୍ୱାଭାବିକରୂପେ ନିତ୍ୟ ଓ ଏହା ନିତ୍ୟ ହୋଇ ରହିବ, କିନ୍ତୁ ମୋହ ଯୋଗୁଁ ଏହା ଅନୁଭୂତ ହେଉ ନାହିଁ। ତାତ୍ପର୍ଯ୍ୟ ହେଲା, ବୁଦ୍ଧିରେ ଜଡ଼ତା (ମୋହ) ଥିବାରୁ ହିଁ ଜଗତ ଜଡ଼ ଦେଖାଯାଉଛି। ବୁଦ୍ଧିରେ ଜଡ଼ତା ନ ରହିଲେ ସବୁକିଛି ଚିନ୍ମୟ। ଆଖିରେ ଯେଉଁ ରଙ୍ଗର ଚଷମା ପିନ୍ଧାଯାଏ, ସବୁଆଡ଼େ

ସେହି ରଙ୍ଗ ଦେଖାଯାଏ । ସେହିପରି ରାଗ-ଦ୍ୱେଷାଦି ବୃତ୍ତି ଯେଉଁଭଳି ହୋଇଥାଏ, ସଂସାର ସେହିଭଳି ଦେଖାଯାଏ ।

ସାଧକର ଭୁଲ୍ ହୁଏ ଯେ ସେ ନିଜକୁ ଅଲଗା ରଖି ସଂସାରକୁ ଭଗବତ୍‌ସ୍ୱରୂପ ଦେଖିବାକୁ ଚେଷ୍ଟା କରେ ଅର୍ଥାତ୍ **'ବାସୁଦେବଃ ସର୍ବମ୍'**କୁ ନିଜ ବୁଦ୍ଧିର ବିଷୟ କରେ । ବାସ୍ତବରେ କେବଳ ଦୃଷ୍ଟିଗୋଚର ହେଉଥିବା ସଂସାର ଯେ ଭଗବତ୍‌ସ୍ୱରୂପ ତା' ନୁହେଁ, ବରଂ ଦ୍ରଷ୍ଟା ମଧ୍ୟ ଭଗବତ୍‌ସ୍ୱରୂପ । ଏଣୁ ସାଧକ ଭାବିବା ଉଚିତ ଯେ ନିଜର ଦେହ ସମେତ ସବୁକିଛି ଭଗବାନ ଅର୍ଥାତ୍ ଶରୀର ମଧ୍ୟ ଭଗବତ୍‌ସ୍ୱରୂପ, ଇନ୍ଦ୍ରିୟଗଣ ମଧ୍ୟ ଭଗବତ୍‌ସ୍ୱରୂପ, ମନ ମଧ୍ୟ ଭଗବତ୍‌ସ୍ୱରୂପ, ବୁଦ୍ଧି ମଧ୍ୟ ଭଗବତ୍‌ସ୍ୱରୂପ, ପ୍ରାଣ ମଧ୍ୟ ଭଗବତ୍‌ସ୍ୱରୂପ ଏବଂ ଅହମ୍ ('ମୁଁ'ଭାବ) ମଧ୍ୟ ଭଗବତ୍‌ସ୍ୱରୂପ ।

ସବୁକିଛି ଭଗବାନ—ଏହା ମାନିବା ପାଇଁ ସାଧକ ବୁଦ୍ଧିକୁ ବଳପୂର୍ବକ ବାଧ୍ୟ କରିବା ଉଚିତ ନୁହେଁ, ବରଂ ସହଜଭାବରେ ଏହି ବାସ୍ତବିକତାକୁ ସ୍ୱୀକାର କରିନେବା ଆବଶ୍ୟକ । ଭାଗବତରେ ଅଛି—

**ସର୍ବଂ ବ୍ରହ୍ମାତ୍ମକଂ ତସ୍ୟ ବିଦ୍ୟୟାଽଽତ୍ମମନୀଷୟା ।**
**ପରିପଶ୍ୟନ୍ନୁପରମେତ୍ ସର୍ବତୋ ମୁକ୍ତସଂଶୟଃ ॥**

(୧୧ । ୨୯ । ୧୮)

"ସମସ୍ତଙ୍କ ପ୍ରତି ଭଗବଦ୍‌ବୁଦ୍ଧି କରାଗଲେ 'ସବୁକିଛି ଭଗବାନ' ବୋଲି ଅନୁଭବ ହୁଏ । ତା'ପରେ ଏହି ପରମାତ୍ମଦୃଷ୍ଟିରୁ ମଧ୍ୟ ଉପରତ ହୋଇଗଲେ ସମସ୍ତ ସଂଶୟ ଆପେ ଆପେ ନିବୃତ୍ତ ହୋଇଯାଏ ।"

ଅଭିପ୍ରାୟ ଏହି ଯେ 'ସବୁକିଛି ପରମାତ୍ମା'—ଏହି ଭାବରୁ ମଧ୍ୟ ଉପରତ ହୋଇଯାଆନ୍ତୁ, ଏଭଳି ଚିନ୍ତନ ମଧ୍ୟ ନ କରନ୍ତୁ ଅର୍ଥାତ୍ କେବଳ ଭଗବାନଙ୍କ ବ୍ୟତୀତ ଦ୍ରଷ୍ଟା ନ ରହୁ, ଦୃଶ୍ୟ ନ ରହୁ କି ଦର୍ଶନ ନ ରହୁ । ଭଗବାନ କହିଛନ୍ତି—

**ମନସା ବଚସା ଦୃଷ୍ଟ୍ୟା ଗୃହ୍ୟତେଽନ୍ୟୈରପୀନ୍ଦ୍ରିୟୈଃ ।**
**ଅହମେବ ନ ମତ୍ତୋଽନ୍ୟଦିତି ବୁଧ୍ୟଧ୍ୱମଞ୍ଜସା ॥**

(ଶ୍ରୀମଭା. ୧୧ । ୧୩ । ୨୪)

"ମନ, ବାଣୀ, ଦୃଷ୍ଟି ତଥା ଅନ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା କିଛି (ଶବ୍ଦାଦି ବିଷୟ) ଗ୍ରହଣ କରାଯାଏ, ସେସବୁ ମୁଁ ଅଟେ । ମୋ ବ୍ୟତୀତ ଆଉ କିଛି ନାହିଁ—ଏ ସିଦ୍ଧାନ୍ତକୁ ବିଗ୍ରହପୂର୍ବକ ଶୀଘ୍ର ବୁଝି ନିଅନ୍ତୁ ଅର୍ଥାତ୍ ସ୍ୱୀକାର କରି ଅନୁଭବ କରନ୍ତୁ ।"



# ୨. ବିବିଧ ରୂପରେ ଭଗବାନ

ଗୀତାରେ ଭଗବାନ କହିଛନ୍ତି—

**ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।**
**ନ ତଦସ୍ତି ବିନା ଯତ୍ସ୍ୟାନ୍ମୟା ଭୂତଂ ଚରାଚରମ୍ ॥**

(୧୦।୩୯)

''ହେ ଅର୍ଜୁନ! ମୁଁ ସମସ୍ତ ପ୍ରାଣୀଙ୍କର ବୀଜ । ମୋ ବ୍ୟତୀତ କୌଣସି ଚର-ଅଚର ପ୍ରାଣୀ ନାହିଁ ଅର୍ଥାତ୍ ଚର-ଅଚର ସବୁକିଛି ମୁଁ ।''

ବୀଜ (ମଞ୍ଜି)ରୁ ଫସଲ ହୁଏ । ଠିକ୍ ସେହିପରି ଭଗବାନଙ୍କ ଠାରୁ ସମଗ୍ର ସଂସାର ସୃଷ୍ଟି ହୋଇଛି । ଯେପରି ଧାନରୁ ଧାନ ଫସଲ ହୁଏ, ଗହମରୁ ଗହମ ଫସଲ ହୁଏ, ପଶୁମାନଙ୍କ ଠାରୁ ପଶୁମାନେ ଜନ୍ମ ନିଅନ୍ତି, ମନୁଷ୍ୟଙ୍କ ଠାରୁ ମନୁଷ୍ୟ ଜନ୍ମ ନିଅନ୍ତି, ସେହିପରି ଭଗବାନଙ୍କ ଠାରୁ ଭଗବାନ ହିଁ ସୃଷ୍ଟି ହୁଅନ୍ତି! ଯେପରି ସ୍ୱର୍ଣ୍ଣନିର୍ମିତ ଗହଣାଗୁଡ଼ିକ ସ୍ୱର୍ଣ୍ଣରୂପ, ଲୌହନିର୍ମିତ ଯନ୍ତ୍ରପାତିଗୁଡ଼ିକ ଲୌହରୂପ, ମୃତ୍ତିକାରେ ତିଆରି ପାତ୍ରଗୁଡ଼ିକ ମୃତ୍ତିକାରୂପ, ସେହିପରି ଭଗବାନଙ୍କ ଠାରୁ ସୃଷ୍ଟ ସଂସାର ଭଗବଦ୍‌ରୂପ ଅଟେ—**'ବାସୁଦେବଃ ସର୍ବମ୍'** (ଗୀତା ୭ । ୧୯) ।

ଚାଷ ଆରମ୍ଭରେ ବୀଜ (ମଞ୍ଜି) ବୁଣାଯାଏ ଏବଂ ଶେଷରେ ମଧ୍ୟ ବୀଜ ଉତ୍ପନ୍ନ ହୁଏ, ମଝି ସମୟରେ ସବୁଜ ଫସଲ ଦେଖାଯାଏ । ଧାନ କିଆରିରେ କେଣ୍ଡା ବାହାରିବା ପୂର୍ବରୁ ଗୋଟିଏ ହେଲେ ଧାନ ଦେଖାଯାଉ ନ ଥାଏ, ତଥାପି ଗାଈ ଖାଇଗଲେ ଆମେ କହୁ ଯେ ତୋ ଗାଈ ମୋ ଧାନ ଖାଇଗଲା! କାରଣ ଯେଉଁଭଳି ବୀଜ ବୁଣାଯାଇଥାଏ, ସେହିଭଳି ଫସଲ ହୁଏ । ଲୌକିକ ବୀଜ ତ ଫସଲରୁ ଉତ୍ପନ୍ନ ହୋଇଥାଏ, କିନ୍ତୁ ଭଗବାନରୂପୀ ବୀଜର ଉତ୍ପତ୍ତି ନାହିଁ; ଏଣୁ ଭଗବାନ ନିଜକୁ ଅନାଦି ବୀଜ କହିଛନ୍ତି—**'ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍'** (ଗୀତା ୭ । ୧୦) । ଲୌକିକ ବୀଜ ଅଙ୍କୁରୋଦ୍‌ଗମ ହେବାପରେ ନଷ୍ଟ ହୋଇଯାଏ, କିନ୍ତୁ ଭଗବାନ ଅନନ୍ତ ସୃଷ୍ଟି ସର୍ଜନା କରି ମଧ୍ୟ ଯଥାବତ୍ ରହିଥାନ୍ତି; ଏଣୁ ଭଗବାନ ନିଜକୁ ଅବ୍ୟୟ ବୀଜ କହିଛନ୍ତି—**'ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍'** (ଗୀତା ୯ । ୧୮) । ଲୌକିକ ବୀଜରୁ ଗୋଟିଏ ଜାତିର ଫସଲ ହୁଏ ।

ଯଥା—ଗହମରୁ ଗହମ ହିଁ ହୋଇଥାଏ । ଗହମରୁ କଦାପି ଗହମ, ଧାନ, ମୁଗ, ବିରି ଇତ୍ୟାଦି ନାନା ପ୍ରକାରର ଶସ୍ୟ ଉତ୍ପନ୍ନ ହୁଏ ନାହିଁ । ସବୁ ମଞ୍ଜି ଅଲଗା ଅଲଗା । କିନ୍ତୁ ଭଗବାନ ଏଭଳି ବିଚିତ୍ର ମଞ୍ଜି ଯେ ଗୋଟିଏ ମାତ୍ର ମଞ୍ଜି (ବୀଜ)ରୁ ସବୁ ପ୍ରକାର ସୃଷ୍ଟି ସର୍ଜନା ହୋଇଯାଏ—

**'ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ ।**
**ତାସାଂ ବ୍ରହ୍ମ ମହଦ୍‌ଯୋନିରହଂ ବୀଜପ୍ରଦଃ ପିତା ॥**

(ଗୀତା ୧୪ । ୪)

"ହେ କୁନ୍ତୀନନ୍ଦନ! ସମସ୍ତ ଯୋନିରେ ପ୍ରାଣୀମାନଙ୍କର ଯେତେ ବି ଶରୀର ଉତ୍ପନ୍ନ ହୁଅନ୍ତି, ସେସବୁର ମାତା ହେଉଛି ମୂଳ ପ୍ରକୃତି ଏବଂ ମୁଁ ହେଉଛି ବୀଜସ୍ଥାପନକାରୀ ପିତା ।"

**'ବହୁ ସ୍ୟାଂ ପ୍ରଜାୟେୟେତି'** (ଛାନ୍ଦୋଗ୍ୟ. ୬ । ୨ । ୩; ତୈତ୍ତିରୀୟ. ୨ । ୬)

"ମୁଁ ଅନେକ ରୂପରେ ପ୍ରକଟିତ ହୋଇ ବହୁତ ହୋଇଯାଏଁ ।"

**'ଏକୋ ବଶୀ ସର୍ବଭୂତାନ୍ତରାତ୍ମା ଏକଂ ରୂପଂ ବହୁଧା ଯଃ କରୋତି ।'**

(କଠ. ୨ । ୨ । ୧୨)

"ସମସ୍ତ ପ୍ରାଣୀଙ୍କର ଅନ୍ତର୍ଯାମୀ, ଅଦ୍ୱିତୀୟ ଏବଂ ସମସ୍ତଙ୍କୁ ବଶରେ ରଖିଥିବା ପରମାତ୍ମା ନିଜର ଗୋଟିଏ ରୂପକୁ ବହୁତ ପ୍ରକାର କରିଦିଅନ୍ତି ।"

ସ୍ଥାବର, ଜଙ୍ଗମ, ଜଳଚର, ସ୍ଥଳଚର, ନଭଚର, ଭୂତ, ପ୍ରେତ, ପିଶାଚ, ରାକ୍ଷସ, ଅସୁର, ଦେବତା, ଗନ୍ଧର୍ବ, ଚଉରାଶୀ ଲକ୍ଷ ଯୋନି, ଚଉଦ ଭୁବନ ପ୍ରଭୃତି ସମସ୍ତଙ୍କର ବୀଜ ହେଉଛନ୍ତି ଭଗବାନ ।

ଅର୍ଜୁନଙ୍କ ପ୍ରାର୍ଥନା ସ୍ୱୀକାର କରି ଭଗବାନ ବିଭୂତିଗୁଡ଼ିକର ବର୍ଣ୍ଣନା କଲେ ଏବଂ ପରିଶେଷରେ ନିଜ ପକ୍ଷରୁ ଗୋଟିଏ ଅତ୍ୟନ୍ତ ବିଚିତ୍ର କଥା କହିଲେ ଯେ—

**ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜୁନ ।**
**ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ॥**

(ଗୀତା ୧୦ । ୪୨)

"ଅଥବା ହେ ଅର୍ଜୁନ ! ଏଭଳି ଅଧିକ କଥା ଜାଣିବାରେ ତୁମର କି ପ୍ରୟୋଜନ? ମୁଁ ନିଜର କୌଣସି ଏକ ଅଂଶରେ ସମଗ୍ର ଜଗତକୁ ବ୍ୟାପ୍ତ କରି ସ୍ଥିତ ହୋଇଛି ।" ତାତ୍ପର୍ଯ୍ୟ ହେଲା, ଜଗତରୂପରେ ଭଗବାନ ହିଁ ବିଦ୍ୟମାନ; କାରଣ ବ୍ୟାପ୍ୟ ଓ ବ୍ୟାପକ ଉଭୟ ଭଗବାନ ହିଁ ଅଟନ୍ତି ।

ଥରେ କହ୍ନେଇ ମାଟି ଖାଇଦେଲା । ମାଆ ଯଶୋଦାଙ୍କୁ ଚିନ୍ତା ହୋଇଗଲା ଯେ ମାଟି ଖାଇଥିବାରୁ କହ୍ନେଇ ବେମାର ହୋଇଯିବ । ସେଥିପାଇଁ ମାଆ କହ୍ନେଇକୁ ବାଡ଼ି ଦେଖାଇ କହିଲେ—"ହଇରେ ! ତୁ ମାଟି କାହିଁକି ଖାଇଲୁ? ପାଟି ଦେଖା ।" କହ୍ନେଇ କହିଲା—"ମାଆ! ମୁଁ ମାଟି ଖାଇନି, ତୁ ମୋ ପାଟି ଦେଖ୍ ।" କହ୍ନେଇ ଆଁ କରି ପାଟି ଦେଖାଇଲା ବେଳକୁ ସେହି ଛୋଟିଆ ପାଟିରେ ଅନନ୍ତ ସୃଷ୍ଟି ଦେଖାଗଲା । ଯଶୋଦା କହ୍ନେଇର ପାଟିରେ ଅନନ୍ତ ବ୍ରହ୍ମାଣ୍ଡ ଦେଖିବାକୁ ପାଇଲେ । ସେ ଦେଖିଲେ ଯେ ପାଟି ଭିତରେ ତିନି ଭୁବନ, ତା'ମଧ୍ୟରେ ଗୋଟିଏ ପୃଥିବୀ, ପୃଥିବୀ ମଧ୍ୟରେ ଭାରତବର୍ଷ, ଭାରତବର୍ଷ ମଧ୍ୟରେ ବ୍ରଜମଣ୍ଡଳ, ବ୍ରଜମଣ୍ଡଳ ମଧ୍ୟରେ ନନ୍ଦଗାଁ, ନନ୍ଦଗାଁ ମଧ୍ୟରେ ନନ୍ଦଙ୍କର ରାଜମହଲ, ରାଜମହଲ ଭିତରେ ଗୋଟିଏ ଘରେ ସେ ନିଜେ କୋଳରେ ଗେହ୍ଲା କହ୍ନେଇକୁ ଧରି ବସିଛନ୍ତି । ସେ କହ୍ନେଇର ଛୋଟିଆ ପାଟି ଭିତରେ ଅନନ୍ତ ସୃଷ୍ଟିକୁ ଦେଖିଲେ । କାରଣ କହ୍ନେଇ ବ୍ୟତୀତ ଆଉ ଅଛି ବା କିଏ !—**'ବାସୁଦେବଃ ସର୍ବମ୍ ।'**

ଥରେ କାକଭୁଶୁଣ୍ଡି ରାମଚନ୍ଦ୍ରଙ୍କର ବାଲ୍ୟଲୀଳା ଦେଖୁଥିଲେ ଏବଂ ତାଙ୍କ ସହିତ ଖେଳୁଥିଲେ । ରାମଚନ୍ଦ୍ରଙ୍କୁ ସାଧାରଣ ଶିଶୁ ପରି ଖେଳୁଥିବାର ଦେଖି କାକଭୁଶୁଣ୍ଡିଙ୍କ ମନରେ ମୋହ ଓ ଭ୍ରମ ସୃଷ୍ଟି ହେଲା । ତାଙ୍କ ମନରେ ମୋହ ଜାତ ହେବା ଜାଣି ପ୍ରଭୁ ରାମଚନ୍ଦ୍ର ହସିଦେଲେ । ପ୍ରଭୁ ହସିଦେବା ମାତ୍ରେ ସେ ତାଙ୍କ ପାଟିରେ ପ୍ରବେଶ କରିଗଲେ । ପ୍ରଭୁଙ୍କ ଉଦର ଭିତରେ ସେ ଅନନ୍ତ ବ୍ରହ୍ମାଣ୍ଡ ଦେଖିବାକୁ ପାଇଲେ । ସେହି ଅନନ୍ତ ବ୍ରହ୍ମାଣ୍ଡ ମଧ୍ୟରେ ସେ ଅନେକ କଳ୍ପ ପର୍ଯ୍ୟନ୍ତ ଭ୍ରମଣ କଲେ । କିଛି କାଳ ସେ ନିଜ ଆଶ୍ରମରେ ମଧ୍ୟ ରହିଲେ । ତା'ପରେ ସେ ଅଯୋଧ୍ୟାକୁ ଯାଇ ରାମଚନ୍ଦ୍ରଙ୍କ ଜନ୍ମଲୀଳା ଦର୍ଶନ କଲେ । ତା'ପରେ ରାମଚନ୍ଦ୍ର ପୁଣିଥରେ ହସି ଦେବାରୁ ସେ ବାହାରକୁ ଆସିଗଲେ । ଏତେ ଘଟଣା କେବଳ ଦୁଇ ଘଡ଼ି ମଧ୍ୟରେ ଘଟିଗଲା (ମାନସ, ଉତ୍ତର. ୮୦ । ୧ ରୁ ୮୨) ।

ଗୀତାରେ ମଧ୍ୟ କୁହାଯାଇଛି ଯେ ଭଗବାନଙ୍କ ଶରୀରର କୌଣସି ଏକ ଅଂଶରେ ଅର୍ଜୁନ ବିରାଟରୂପକୁ ଦେଖିଲେ । ଅର୍ଜୁନ କହିଛନ୍ତି—**'ପଶ୍ୟାମି ଦେବାଂସ୍ତବ ଦେବ ଦେହେ'** (ଗୀତା ୧୧ । ୧୫), ସଞ୍ଜୟ ମଧ୍ୟ କହିଛନ୍ତି—**'ଅପଶ୍ୟଦ୍ଦେବ-ଦେବସ୍ୟ ଶରୀରେ ପାଣ୍ଡବସ୍ତଦା'** (ଗୀତା ୧୧ । ୧୩) ଏବଂ ଭଗବାନ ନିଜେ

ମଧ୍ୟ କହିଛନ୍ତି—**'ଇହୈକସ୍ଥଂ ଜଗତ୍କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରମ୍ । ମମ ଦେହେ ଗୁଡାକେଶ ଯଚ୍ଚାନ୍ୟଦ୍ ଦ୍ରଷ୍ଟୁମିଚ୍ଛସି'** (ଗୀତା ୧୧ । ୭) ।

ଭାଗବତରେ ଭକ୍ତଙ୍କର ତିନୋଟି ଶ୍ରେଣୀ କଥା ଉଲ୍ଲେଖ ଅଛି— ପ୍ରାକୃତ, ମଧ୍ୟମ ଓ ଉତ୍ତମ । ଯିଏ କେବଳ ମୂର୍ତ୍ତିରେ ଶ୍ରଦ୍ଧାର ସହ ଭଗବାନଙ୍କୁ ପୂଜା କରେ, ଭଗବାନଙ୍କ ଭକ୍ତ ତଥା ଅନ୍ୟ ଜ୍ଞାନୀ, ଅନାସକ୍ତ ସାଧୁସନ୍ଥ ପ୍ରଭୃତିଙ୍କ ପ୍ରତି ଶ୍ରଦ୍ଧା-ପ୍ରେମ ରଖେ ନାହିଁ, ସେ ପ୍ରାକୃତ ଅର୍ଥାତ୍ ପ୍ରାରମ୍ଭିକ ଭକ୍ତ* । ଯେପରି କ-ଖ-ଗ-ଘ ଶିଖୁଥିବା ପ୍ରାରମ୍ଭିକ ବିଦ୍ୟାର୍ଥୀର ବିଦ୍ୟାଧ୍ୟୟନ ଆରମ୍ଭ ହୋଇଯାଇଥାଏ, ସେହିପରି ଏହି ଭକ୍ତର ଭକ୍ତି ଆରମ୍ଭ ହୋଇଯାଇଛି । ଯିଏ ଭଗବାନଙ୍କ ପ୍ରତି ପ୍ରେମ, ତାଙ୍କ ଭକ୍ତମାନଙ୍କ ପ୍ରତି ମିତ୍ରତା, ଦୁଃଖୀମାନଙ୍କ ଉପରେ କରୁଣା ତଥା ଭଗବାନଙ୍କ ପ୍ରତି ଦ୍ୱେଷ ରଖୁଥିବା ବ୍ୟକ୍ତିମାନଙ୍କୁ ଉପେକ୍ଷା କରେ, ସେ ହେଉଛି ମଧ୍ୟମ ଭକ୍ତ ψ । ଯିଏ ସମଗ୍ର ସଂସାରରେ ପରମାତ୍ମାଙ୍କୁ ସମାନରୂପରେ ଦେଖେ, ସେ ହେଉଛି ଉତ୍ତମ ଭକ୍ତ § । ଉତ୍ତମ ଭକ୍ତଙ୍କ ଲକ୍ଷଣକୁ ଯଦି ଆମେ ପ୍ରଥମରୁ ମାନିନେବା, ତେବେ କେତେ ଉପକାର ନ ହେବ! ଏପରି ମାନିନେଲେ ଆମେ ପ୍ରଥମେ ଆଚାର୍ଯ୍ୟ ହୋଇଯିବା ଓ ତା'ପରେ କ-ଖ-ଗ-ଘ ଶିଖିବା! ସବୁକିଛି ଭଗବାନ— ଏପରି ମାନିନେବା ମାତ୍ରେ ଆମେ ଆଚାର୍ଯ୍ୟ ହୋଇଯିବା! ତେଣିକି ନାମଜପ, ସତ୍ସଙ୍ଗ ଆଦି କଲେ ଅତି ସହଜରେ ଭଗବତ୍ପ୍ରାପ୍ତି ହୋଇଯିବ ।

ଯାହା ଆମର ମନୋନୁକୂଳ ହୁଏ, ସେଥିରେ ତ ଭଗବାନଙ୍କୁ ଦେଖିବା ସହଜ ହୁଏ, କିନ୍ତୁ ଯାହା ଆମ ମନର ପ୍ରତିକୂଳ, ସେଥିରେ ଭଗବାନଙ୍କୁ ଦେଖିବା କଠିନ ହୁଏ । ଯାହା ଆମ ମନକୁ ଭଲ ଲାଗୁ ନାହିଁ, ମନର ପ୍ରତିକୂଳ ହେଉଛି, ସେଥିରେ ଯଦି ଆମେ ଭଗବଦ୍ଭାବ କରିନେବା, ତେବେ ଅତି ଶୀଘ୍ର ଉଚ୍ଚସ୍ତରର ଭକ୍ତ ହୋଇପାରିବା । ଏଣୁ ଭଲ-ମନ୍ଦ, ଗୁଣ-ଦୋଷ ସବୁଥିରେ ଭଗବାନଙ୍କୁ ଦେଖିବାର ପ୍ରକ୍ରିୟା ଆରମ୍ଭ କରିଦିଅନ୍ତୁ—

---

* ଅର୍ଚାୟାମେବ ହରୟେ ପୂଜାଂ ଯଃ ଶ୍ରଦ୍ଧୟେହତେ ।
ନ ତଦ୍ଭକ୍ତେଷୁ ଚାନ୍ୟେଷୁ ସ ଭକ୍ତଃ ପ୍ରାକୃତଃ ସ୍ମୃତଃ ॥ (ଶ୍ରୀମଦ୍ଭା. ୧୧ । ୨ । ୪୭)

ψ ଈଶ୍ୱରେ ତଦଧୀନେଷୁ ବାଲିଶେଷୁ ଦ୍ୱିଷତ୍ସୁ ଚ ।
ପ୍ରେମମୈତ୍ରୀକୃପୋପେକ୍ଷା ଯଃ କରୋତି ସ ମଧ୍ୟମଃ ॥ (ଶ୍ରୀମଦ୍ଭା. ୧୧ । ୨ । ୪୬)

§ ସର୍ବଭୂତେଷୁ ଯଃ ପଶ୍ୟେଦ୍ ଭଗବଦ୍ଭାବମାତ୍ମନଃ ।
ଭୂତାନି ଭଗବତ୍ୟାତ୍ମନ୍ୟେଷ ଭାଗବତୋତ୍ତମଃ ॥ (ଶ୍ରୀମଦ୍ଭା. ୧୧ । ୨ । ୪୫)

**ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।**
**ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ ॥**

(ଗୀତା ୬ । ୯)

"ସୁହୃଦ୍, ମିତ୍ର, ଶତ୍ରୁ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ ଓ ସମ୍ପର୍କୀୟମାନଙ୍କ ପ୍ରତି ତଥା ସାଧୁ-ଆଚରଣଯୁକ୍ତ ଓ ପାପାଚରଣଯୁକ୍ତ ବ୍ୟକ୍ତିମାନଙ୍କ ପ୍ରତି ମଧ୍ୟ ସମବୁଦ୍ଧିସମ୍ପନ୍ନ (ଭଗବାନଙ୍କୁ ସମାନରୂପରେ ଦେଖୁଥିବା) ମନୁଷ୍ୟ ଶ୍ରେଷ୍ଠ ।"

ଯେଉଁମାନେ ଆମ ପ୍ରତି ଶତ୍ରୁତା ଓ ବିରୋଧଭାବ ରଖନ୍ତି, ଆମର ନିନ୍ଦା ଓ ନିରାଦର କରନ୍ତି, ସେମାନଙ୍କ ଭିତରେ ମଧ୍ୟ ଭଗବାନଙ୍କୁ ଦେଖିବା ଉଚିତ । ଏପରି ଭାବିବା ଉଚିତ ଯେ, ଉପରେ ଏମାନଙ୍କର ସ୍ୱଭାବ ଖରାପ ହୋଇଯାଇଛି, କିନ୍ତୁ ଭିତରେ ଏମାନେ ଭଗବାନଙ୍କର । ସିଂହ, ସାପ, ବିଛା ପ୍ରଭୃତି ସମସ୍ତେ ଭଗବାନଙ୍କର ସ୍ୱରୂପ । ସେମାନେ ଉପରେ ଅନେକ ରଙ୍ଗର ବସ୍ତ୍ର ଧାରଣ କରିଛନ୍ତି, କିନ୍ତୁ ଭିତରେ (ତତ୍ତ୍ୱତଃ) ଏକମାତ୍ର ଭଗବାନ ହିଁ ସବୁକିଛି ହୋଇଛନ୍ତି । ଦେହରେ ସାବୁନ ଲଗାଇ ଗାଧୋଇବା ବେଳେ ଦେହ ଅତି ଅସୁନ୍ଦର ଦେଖାଯାଏ । କେଉଁଠି ମେଞ୍ଚାଏ ଫେଣ ଲାଗିଥିବାର ଦେଖାଯାଏ ତ ଆଉ କେଉଁଠି ଗାର ଗାର ଦେଖାଯାଏ! ଅସୁନ୍ଦର ଦେଖାଗଲେ ମଧ୍ୟ ମନରେ ଏମିତି ଭାବି ଦୁଃଖୀ ହୁଏ ନାହିଁ ଯେ, ମୋତେ ରୋଗ ହୋଇଯାଇଛି! କାରଣ ଅନ୍ତରରେ ଏଭଳି ଭାବ ରହିଥାଏ ଯେ, ଏହା କେବଳ ଉପରକୁ ଏମିତି ଅସୁନ୍ଦର ଦେଖାଯାଉଛି, ପାଣି ଢାଳି ଗାଧୋଇ ପଡ଼ିଲେ ସବୁ ସଫା ହୋଇଯିବ । ସେହିପରି ସମସ୍ତେ ଭଗବାନଙ୍କର ସ୍ୱରୂପ, କିନ୍ତୁ ଉପରେ (ଶରୀର ଦୃଷ୍ଟିରୁ) ସେମାନଙ୍କର ସ୍ୱଭାବ ଭିନ୍ନ ଭିନ୍ନ ଦେଖାଯାଉଛି । ବାସ୍ତବରେ ଉପରେ ଦେଖାଯାଉଥିବା ଦୃଶ୍ୟ ମଧ୍ୟ ପରମାତ୍ମାଙ୍କର ସ୍ୱରୂପ, କିନ୍ତୁ ଆମର ରାଗ-ଦ୍ୱେଷ ଯୋଗୁଁ ସେଗୁଡ଼ିକ ଭିନ୍ନ ଭିନ୍ନ ଦେଖାଯାଉଛି ।

ଏକମାତ୍ର ଭଗବାନ ହିଁ ଅନେକ ରୂପ ଧାରଣ କରି ଆମ ସମ୍ମୁଖକୁ ଆସୁଛନ୍ତି—**'ଅନେକରୂପରୂପାୟ ବିଷ୍ଣବେ ପ୍ରଭବିଷ୍ଣବେ'** । କେଉଁଠି ନିଆଁ ଲାଗିଛି, କେଉଁଠି ଜଳସ୍ରୋତ ବହିଚାଲିଛି, କେଉଁଠି ବିବାହୋତ୍ସବ ହେଉଛି, କେଉଁଠି ମୃତ୍ୟୁର ଶୋକସଭା ହେଉଛି, କେଉଁଠି ବିଦ୍ୱାନ୍‌ମାନେ ପରସ୍ପର ମଧ୍ୟରେ ତତ୍ତ୍ୱ ସମ୍ବନ୍ଧୀୟ ଆଲୋଚନା କରୁଛନ୍ତି ଏବଂ କେଉଁଠି ଲୋକେ ମଦ ପିଇ ମାରପିଟ କରୁଛନ୍ତି । ଏସବୁ ରୂପ ତ ଅନେକ, କିନ୍ତୁ କେବଳ ଭଗବାନ ହିଁ ସମସ୍ତଙ୍କ ମଧ୍ୟରେ ବିଦ୍ୟମାନ । ଉପରର ସ୍ୱଭାବ ଅସ୍ତିତ୍ୱବିହୀନ

ହୋଇଥିବାରୁ ତାହା ବଦଳୁଥାଏ, କିନ୍ତୁ ପରମାତ୍ମତତ୍ତ୍ୱ ଅସ୍ତିତ୍ୱବାନ୍ ଓ ସତ୍ ହୋଇଥିବାରୁ କଦାପି ବଦଳେ ନାହିଁ। ସେଥିପାଇଁ ବଡ଼ ବଡ଼ ଦୁଷ୍ଟ ଲୋକେ ମଧ୍ୟ ମହାତ୍ମା ହୋଇପାରିଛନ୍ତି! ସଜ୍ଜନ ପରିବର୍ତ୍ତନଶୀଳକୁ ଦେଖନ୍ତି ନାହିଁ, ବରଂ ସେଥିମଧ୍ୟରେ ବିଦ୍ୟମାନ ଅପରିବର୍ତ୍ତନଶୀଳ ତତ୍ତ୍ୱକୁ ଦେଖନ୍ତି—

**ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ॥**

(ଗୀତା ୫।୧୮)

"ଜ୍ଞାନୀ ମହାପୁରୁଷ ବିଦ୍ୟାବିନୟସମ୍ପନ୍ନ ବ୍ରାହ୍ମଣଠାରେ ଓ ଚଣ୍ଡାଳଠାରେ ତଥା ଗାଈ, ହାତୀ ଓ କୁକୁରଠାରେ ମଧ୍ୟ ସମରୂପ ପରମାତ୍ମାଙ୍କୁ ଦେଖନ୍ତି।"

ସୃଷ୍ଟିର ଆରମ୍ଭରେ ମଧ୍ୟ ପରମାତ୍ମା ଥିଲେ—**'ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍'** (ଛାନ୍ଦୋଗ୍ୟ. ୬।୨।୧) ଏବଂ ଶେଷରେ ମଧ୍ୟ ପରମାତ୍ମା ରହିବେ—**'ଶିଷ୍ୟତେ ଶେଷସଂଜ୍ଞଃ'** (ଶ୍ରୀମଦ୍ଭା. ୧୦।୩।୨୫), ତେବେ ମଝିରେ ଆଉ କିଏ କେଉଁଠୁ ଆସିବ? ଅନ୍ନକୁଟ ଉତ୍ସବ ଦିନ ପ୍ରସାଦରେ ରସଗୋଲା, ଆରିସା, କାକରା ଇତ୍ୟାଦି ଥାଏ ଏବଂ ମେଥିଶାଗ, କଲରା ତରକାରୀ ଇତ୍ୟାଦି ମଧ୍ୟ ଥାଏ। ମିଠା ବି ଭଗବାନଙ୍କର ପ୍ରସାଦ, ପିତା ବି ଭଗବାନଙ୍କର ପ୍ରସାଦ। ସେହିପରି ଯାହା ଆମ ମନର ଅନୁକୂଳ, ତାହା ମଧ୍ୟ ଭଗବାନଙ୍କର ସ୍ୱରୂପ ଏବଂ ଯାହା ମନର ପ୍ରତିକୂଳ, ତାହା ମଧ୍ୟ ଭଗବାନଙ୍କର ସ୍ୱରୂପ। ସତ୍ ମଧ୍ୟ ଭଗବାନଙ୍କର ସ୍ୱରୂପ ଏବଂ ଅସତ୍ ମଧ୍ୟ ଭଗବାନଙ୍କର ସ୍ୱରୂପ। ଅମୃତ ମଧ୍ୟ ଭଗବାନଙ୍କର ସ୍ୱରୂପ ଏବଂ ମୃତ୍ୟୁ ମଧ୍ୟ ଭଗବାନଙ୍କର ସ୍ୱରୂପ—

**'ଅମୃତଂ ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜୁନ'** (ଗୀତା ୯।୧୯)
**'ମୃତ୍ୟୁଃ ସର୍ବହରଶ୍ଚାହମ୍'** (ଗୀତା ୧୦।୩୪)

ଥରେ ଭକ୍ତ ନାମଦେବଙ୍କ ଘରେ ନିଆଁ ଲାଗିଗଲା। ଲୋକେ ତାଙ୍କୁ ଘରପୋଡ଼ିର ସମାଗ୍ୱର ଦେଲେ। ସମାଗ୍ୱର ପାଇ ନାମଦେବ ଆନନ୍ଦରେ ନାଚିବାକୁ ଲାଗିଲେ। ସେ ଭାବିଲେ, ମାଲିକ (ଭଗବାନଙ୍କ) ବ୍ୟତୀତ ନ ପଗ୍ୱରି ଘରେ ପଶିବାର ସାହସ କାହାର ବା ହୋଇ ପାରିବ? ଭଗବାନ ହିଁ ମୋ ଘରକୁ ଅଗ୍ନିରୂପ ଧରି ଆସିଛନ୍ତି ଏବଂ ପଦାର୍ଥଗୁଡ଼ିକୁ ନୈବେଦ୍ୟରୂପେ ଗ୍ରହଣ କରୁଛନ୍ତି। ବାହାରେ ଯେଉଁ ଜିନିଷଗୁଡ଼ିକ ଥିଲା, ସେଗୁଡ଼ିକୁ ମଧ୍ୟ ନାମଦେବ ଗୋଟି ଗୋଟି କରି ନିଆଁକୁ ଫୋପାଡ଼ିଲେ ଏବଂ କହିଲେ—ପ୍ରଭୁ!

ଏଗୁଡ଼ିକୁ ମଧ୍ୟ ନୈବେଦ୍ୟ କରନ୍ତୁ! ତା'ପରେ ଭଗବାନ ରାତାରାତି ନାମଦେବଙ୍କ ଘର ତିଆରି କରିଦେଲେ; କାରଣ ଯେଉଁ ଜିନିଷ ଭଗବାନଙ୍କୁ ଭୋଗ ଲାଗେ, ତାହା ପ୍ରସାଦରୂପରେ ମିଳିଥାଏ। ମୀରାବାଈଙ୍କୁ ମାରିବା ଉଦ୍ଦେଶ୍ୟରେ ତାଙ୍କ ପାଖକୁ ସିଂହ ପଠାଯିବାରୁ ସେ ସିଂହକୁ ଦେଖି ଖୁସୀ ହୋଇ ଭାବିଲେ ଯେ, ଯାହାହେଉ ଆଜି ମୋ ଘରକୁ ପ୍ରହ୍ଲାଦଙ୍କ ନରସିଂହ ଭଗବାନ ଆସିଛନ୍ତି! ସେ ସିଂହକୁ ଆଳତି କଲେ ଓ ମାଳା ପିନ୍ଧାଇଲେ। ଆଳତି କରିସାରି ପାଣି ଛିଞ୍ଚି ଦେବାରୁ ସିଂହ ଫେରିଗଲା। କହିବାର ଉଦ୍ଦେଶ୍ୟ ଯେ, ଭଗବାନ ଯେକୌଣସି ରୂପରେ ଆସିଲେ ମଧ୍ୟ ଭକ୍ତ ତାଙ୍କୁ ଚିହ୍ନିଯାଏ।

ଭଗବାନ ତାଙ୍କ ଇଚ୍ଛାରେ ଯେକୌଣସି ରୂପ ଧାରଣ କରି ଆସି ପାରନ୍ତି। ସୁନ୍ଦର ଦୃଶ୍ୟ, ପ୍ରସ୍ଫୁଟିତ ପୁଷ୍ପ ଓ ମହମହ ସୁଗନ୍ଧ ମଧ୍ୟ ଭଗବାନଙ୍କର ରୂପ ଏବଂ ମାଂସ, ହାଡ଼, ମଳମୂତ୍ର ଓ ଦୁର୍ଗନ୍ଧ ମଧ୍ୟ ଭଗବାନଙ୍କର ରୂପ। ଭଗବାନଙ୍କ ବ୍ୟତୀତ ଆଉ କିଛି ନାହିଁ। ଭଗବାନ ରାମ, କୃଷ୍ଣ ଆଦି ରୂପ ମଧ୍ୟ ଧାରଣ କରିଛନ୍ତି ଏବଂ ମତ୍ସ୍ୟ, କଚ୍ଛପ ଆଦି ରୂପ ମଧ୍ୟ ଧାରଣ କରିଛନ୍ତି। ସେ ଯେପରି ରୂପ ଧାରଣ କଲେ ମଧ୍ୟ ଭଗବାନ ହିଁ ଅଟନ୍ତି! ସବୁ ରୂପ ଭଗବାନଙ୍କର ହିଁ ରୂପ ଏବଂ ସବୁ କ୍ରିୟା ଭଗବାନଙ୍କର ଲୀଳା। କେହି ପାପ ବା ଅନ୍ୟାୟ କରୁଥିବାର ଦେଖିଲେ ଭାବିବା ଉଚିତ ଯେ ଭଗବାନ କଳିଯୁଗର ଲୀଳା କରୁଛନ୍ତି। ସେ ଯେଉଁପରି ରୂପ ଧାରଣ କରନ୍ତି, ସେହିପରି ଲୀଳା କରନ୍ତି। ବରାହ (ଘୁଷୁରି) ରୂପ ଧାରଣ କଲେ ସେ ବରାହ ଭଳି ଲୀଳା କରନ୍ତି ଏବଂ ମନୁଷ୍ୟ ରୂପ ଧାରଣ କଲେ ମନୁଷ୍ୟ ଭଳି ଲୀଳା କରନ୍ତି। ସେ ଯେକୌଣସି ରୂପ ଧାରଣ କରି ଯେପରି ଲୀଳା କରନ୍ତୁ ନା କାହିଁକି, ଭକ୍ତମାନଙ୍କ ଦୃଷ୍ଟି ଭଗବାନଙ୍କୁ ଛାଡ଼ି ଅନ୍ୟ କୁଆଡ଼େ ଯାଏ ନାହିଁ। ଯଦି ସବୁକିଛି ଭଗବାନ, ତେବେ ଭକ୍ତ ତାଙ୍କ ବ୍ୟତୀତ ଆଉ କାହାକୁ ବା ଦେଖିବ? ସେଥିପାଇଁ ଭକ୍ତ କହେ—

**ତ୍ୱମେବ ମାତା ଚ ପିତା ତ୍ୱମେବ ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ।**
**ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ ତ୍ୱମେବ ସର୍ବଂ ମମ ଦେବଦେବ॥**

—ଉକ୍ତ ଶ୍ଳୋକର ଦୁଇଟି ଅର୍ଥ ହୋଇପାରେ—(୧) ଆପଣ ହିଁ ମାତା, ଆପଣ ହିଁ ପିତା, ଆପଣ ହିଁ ବନ୍ଧୁ, ଆପଣ ହିଁ ସଖା, ଆପଣ ହିଁ ବିଦ୍ୟା, ଆପଣ ହିଁ ଧନ ଏବଂ ହେ ଦେବଦେବ! ଆପଣ ହିଁ ମୋର ସବୁକିଛି। (୨) ମୋର ମାତା ମଧ୍ୟ ଆପଣଙ୍କର ସ୍ୱରୂପ, ମୋର ପିତା ମଧ୍ୟ ଆପଣଙ୍କର ସ୍ୱରୂପ,

ମୋର ବନ୍ଧୁ ମଧ୍ୟ ଆପଣଙ୍କର ସ୍ୱରୂପ, ମୋର ସଖା ମଧ୍ୟ ଆପଣଙ୍କର ସ୍ୱରୂପ, ମୋର ବିଦ୍ୟା ମଧ୍ୟ ଆପଣଙ୍କର ସ୍ୱରୂପ, ମୋର ଧନ ମଧ୍ୟ ଆପଣଙ୍କର ସ୍ୱରୂପ ଏବଂ ହେ ଦେବଦେବ! ମୋର ସବୁକିଛି ଆପଣଙ୍କର ହିଁ ସ୍ୱରୂପ ଅଟେ ।

ନିଜର କୌଣସି ପ୍ରିୟ ବ୍ୟକ୍ତି ସହିତ ଭେଟ ହୋଇଗଲେ ବହୁତ ଆନନ୍ଦ ମିଳେ । ଯେତେବେଳେ ସବୁ ରୂପରେ ନିଜର ଅତ୍ୟନ୍ତ ପ୍ରିୟ ଇଷ୍ଟ ଭଗବାନଙ୍କ ସହ ସାକ୍ଷାତ ହେବ, ସେତେବେଳେ କେତେ ଆନନ୍ଦ ନ ମିଳିବ! ଏଣୁ ସବୁ ରୂପରେ ନିଜର ପ୍ରିୟତମ ଭଗବାନଙ୍କୁ ଦେଖି ପ୍ରସନ୍ନ ହୁଅନ୍ତୁ, ଆନନ୍ଦିତ ହୁଅନ୍ତୁ । ଭଗବାନ କେତେବେଳେ ସୌମ୍ୟରୂପରେ ଆସନ୍ତି ତ କେତେବେଳେ କ୍ରୂରରୂପରେ ଆସନ୍ତି, କେତେବେଳେ ଥଣ୍ଡାରୂପରେ ଆସନ୍ତି ତ ଆଉ କେତେବେଳେ ଗରମରୂପରେ ଆସନ୍ତି, ପୁଣି ଆଉ କେତେବେଳେ ବାୟୁ, ବର୍ଷା ଇତ୍ୟାଦି ରୂପରେ ଆସନ୍ତି । ସେ କେତେବେଳେ ବିଜୁଳିରୂପରେ ଚମକି ଉଠନ୍ତି ତ ଆଉ କେତେବେଳେ ମେଘରୂପରେ ଗର୍ଜନ କରନ୍ତି । ଯେଉଁଠିକି ମନ ଯାଉଛି, ସେଠାରେ ଭଗବାନ ବିରାଜମାନ । ଏଥର ମନକୁ ଏକାଗ୍ର କରିବା ପାଇଁ ଏତେ କଷ୍ଟ କାହିଁକି କରିବା? ମନକୁ ମୁକ୍ତ କରି ଛାଡ଼ିଦିଅନ୍ତୁ । ଏହି ବିଶ୍ୱାସ ଦୃଢ଼ ରଖନ୍ତୁ ଯେ ମୋ ମନ ଯେଉଁଠିକି ଯାଉଛି ଭଗବାନଙ୍କ ଆଡ଼କୁ ହିଁ ଯାଉଛି ଏବଂ ମୋ ମନରେ ଯାହା କିଛି ଆସୁଛି ଭଗବାନ ହିଁ ଆସୁଛନ୍ତି; କାରଣ ଭଗବାନ ହିଁ ସବୁକିଛି । ଭଗବାନ କହିଛନ୍ତି—

**ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି ।**
**ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ॥**

(ଗୀତା ୬ । ୩୦)

''ଯିଏ ସମସ୍ତଙ୍କ ଠାରେ ମୋତେ ଦେଖେ ଏବଂ ମୋ'ଠାରେ ସମସ୍ତଙ୍କୁ ଦେଖେ, ତା' ପାଇଁ ମୁଁ ଅଦୃଶ୍ୟ ହୁଏ ନାହିଁ ଏବଂ ସେ ମୋ ପାଇଁ ଅଦୃଶ୍ୟ ହୁଏ ନାହିଁ ।''

ଯଦି ସବୁଆଡ଼େ ବରଫ ବିଛାଇ ହୋଇ ପଡ଼ିଥାଏ, ତେବେ ବରଫ ଆଉ କାହା ପଛରେ ବା ଲୁଚି ରହିବ? ବରଫ ପଛରେ ବରଫକୁ ଲୁଚାଇଲେ ମଧ୍ୟ ବରଫ ହିଁ ଦେଖାଯିବ! ସେହିପରି ଯଦି ସବୁରୂପରେ ଭଗବାନ ହିଁ ବିରାଜମାନ, ତେବେ ସେ କିପରି ଲୁଚି ରହିବେ, କେଉଁଠି ଲୁଚି ରହିବେ ଏବଂ କାହା ପଛରେ ଲୁଚି ରହିବେ?



## ୩. ସର୍ବତ୍ର ଭଗବଦ୍ଦର୍ଶନ

ପରମାତ୍ମତତ୍ତ୍ୱ ପ୍ରାପ୍ତିରେ ବିଳମ୍ବ ହେବାର ଏକମାତ୍ର କାରଣ—ତୀବ୍ର ଅଭିଳାଷର ଅଭାବ ଏବଂ ଏହି ଅଭିଳାଷ ନ ହେବାର କାରଣ ହେଉଛି ସାଂସାରିକ ସୁଖର ଇଚ୍ଛା । ମୋତେ ପରମାତ୍ମା ମିଳନ୍ତୁ, ମୋର କଲ୍ୟାଣ ହେଉ, ମୋତେ ତତ୍ତ୍ୱଜ୍ଞାନ ମିଳୁ, ମୋର ଭଗବାନଙ୍କ ପ୍ରତି ପ୍ରେମ ହେଉ, ମୁଁ ଜୀବନ୍ମୁକ୍ତ ହୋଇଯାଏଁ, ମୁଁ ଜନ୍ମମରଣରୁ ମୁକ୍ତ ହୋଇଯାଏଁ, ମୁଁ ସମସ୍ତ ଦୁଃଖରୁ ପାର ପାଇଯାଏଁ * ଇତ୍ୟାଦି ମଧ୍ୟରୁ କୌଣସି ଗୋଟିଏ ଅଭିଳାଷ ଏଭଳି ତୀବ୍ର ହେବା ଉଚିତ, ଯାହା ବିନା ରହିହେବ ନାହିଁ । ଧରାଯାଉ କାହା ମନରେ ଏପରି ତୀବ୍ର ଉତ୍କଣ୍ଠା ଅଛି ଯେ "ଗଙ୍ଗାକୂଳରେ ପହଞ୍ଚିଯାଆନ୍ତି କି! ଗଙ୍ଗାଙ୍କର ଦର୍ଶନ ଟିକେ ମିଳିଯାଆନ୍ତା କି! କାହାକୁ ଗଙ୍ଗା କହନ୍ତି ଟିକେ ଦେଖନ୍ତି!" ଇତ୍ୟାଦି । ସେହି ସମୟରେ କୌଣସି ଜାଣିଥିବା ବ୍ୟକ୍ତି ଯଦି ସମ୍ମୁଖରେ ପ୍ରବାହିତ ନଦୀ ଆଡ଼କୁ ସଂକେତ କରି ତାହା ଗଙ୍ଗାନଦୀ ବୋଲି କହିଦିଏ, ତେବେ ଗଙ୍ଗାକୁ ଚିହ୍ନିବାରେ ତାକୁ କଣ ସମୟ ଲାଗିବ? କଣ ପରିଶ୍ରମ ପଡ଼ିବ? ଆଗରୁ ତା' ଦୃଷ୍ଟିରେ ତାହା ଗୋଟିଏ ସାଧାରଣ ନଦୀ ଥିଲା, ଏବେ କେବଳ ଦୃଷ୍ଟିକୋଣର ପରିବର୍ତ୍ତନ ଘଟିଲା ଯେ—ଆରେ ଏଇ ତ ଗଙ୍ଗାନଦୀ! ଏତିକିମାତ୍ର କଥା ।

ଥରେ ଜଣେ ଲୋକ ସେଠଜୀ ଶ୍ରୀଜୟଦୟାଲ ଗୋୟନ୍ଦକାଙ୍କୁ କହିଲେ ଯେ ମୋତେ ଭଗବାନଙ୍କର ଦର୍ଶନ କରାଇଦିଅ! ସେଠଜୀ କହିଲେ—ମୋର ଏଭଳି ସାମର୍ଥ୍ୟ ନାହିଁ । ସେ ବାରମ୍ବାର କହିବାରୁ ସେଠଜୀ କହିଲେ—ମୁଁ ଦର୍ଶନ କରାଇଦେଲେ ମଧ୍ୟ ତୁମେ ମାନିବ ନାହିଁ । ଯଦି ତୁମେ ମାନିବ, ତେବେ ମୁଁ ଦର୍ଶନ କରାଇଦେବି । ସେ କହିଲା—ଆପଣ ଅତି ସତ୍ୟବାଦୀ ଭାବରେ ପରିଚିତ, ତେଣୁ ଆପଣ କହିଲେ ମୁଁ ମାନିନେବି । ସେଠଜୀ ତାଙ୍କୁ ବାହାର ଅଗଣାକୁ ନେଇ ସୂର୍ଯ୍ୟଙ୍କ ଆଡ଼କୁ ସଂକେତ କରି କହିଲେ—ଦେଖ, ଏ ହେଉଛନ୍ତି ଭଗବାନ! ସେ ଲୋକ ଜଣକ କହିଲେ—ଏ ସୂର୍ଯ୍ୟଙ୍କୁ ତ ଆମେ ସବୁଦିନ ଦେଖୁଛୁ! ସେଠଜୀ କହିଲେ—ଶାସ୍ତ୍ରରେ ସୂର୍ଯ୍ୟଙ୍କୁ ଭଗବାନ ବୋଲି କୁହାଯାଇଛି । ଈଶ୍ୱର ଶ୍ରେଣୀର ପଞ୍ଚଦେବତାଙ୍କ ମଧ୍ୟରେ ସୂର୍ଯ୍ୟଙ୍କ

* ପରମାତ୍ମପ୍ରାପ୍ତି, କଲ୍ୟାଣ, ତତ୍ତ୍ୱଜ୍ଞାନ ପ୍ରଭୃତି ବାସ୍ତବରେ ସମାନ ।

ନାମ ଅନ୍ୟତମ। ଅତଏବ ସୂର୍ଯ୍ୟ ଯେ ଭଗବାନ, ଏଥିରେ ସନ୍ଦେହ କଣ? କହିବାର ଉଦ୍ଦେଶ୍ୟ ହେଲା, ଭଗବାନଙ୍କୁ ପାଇବାରେ ବିଳମ୍ବ ହୁଅନ୍ତା ନାହିଁ, କେବଳ ସେଥିପ୍ରତି ତୀବ୍ର ଅଭିଳାଷ ନ ଥିବାରୁ ବିଳମ୍ବ ହେଉଛି।

ଘରେ କୌଣସି ବ୍ୟକ୍ତି ଭୋକିଲା ଥିଲେ ତାକୁ ଆପଣ ଭାତ, ଡାଲି, ହାଲୁଆ, ପୁରି ଇତ୍ୟାଦି ସବୁକିଛି ତିଆରି କରି ଖାଇବାକୁ ଦେଇ ପାରିବେ, କିନ୍ତୁ ଭୋକ ଦେଇ ପାରିବେ ନାହିଁ। ତାକୁ ହିଁ ଭୋକ ଲାଗିବା ଦରକାର। ସେହିପରି ନିଜର ଅଭିଳାଷ ତୀବ୍ର ହେବା ଦରକାର। ଅଭିଳାଷ ତୀବ୍ର ହୋଇଗଲେ ଭଗବତ୍‌ପ୍ରାପ୍ତିରେ ବିଳମ୍ବର ପ୍ରଶ୍ନ ନାହିଁ। ଆପଣ ଦେଖିବା ପାଇଁ ପ୍ରସ୍ତୁତ ଏବଂ ଭଗବାନ ଦେଖାଦେବା ପାଇଁ ପ୍ରସ୍ତୁତ, ପୁଣି ବିଳମ୍ବର ସ୍ଥାନ କାହିଁ?

ଭଗବାନଙ୍କୁ ପାଇବା ଅତି ସୁଲଭ! ଏପରି ସୁଲଭ କାମ ଆଉ କିଛି ହୋଇ ନ ପାରେ। ସୁଲଭତା-ଦୁର୍ଲଭତା, ସୁଗମତା-କଠିନତା ଇତ୍ୟାଦିର ପ୍ରୟୋଗ ସେଇଠାରେ କରାଯାଏ, ଯେଉଁଠି କିଛି କରିବାକୁ ପଡ଼ିଥାଏ ଅଥବା ପ୍ରାପଣୀୟ ତତ୍ତ୍ୱଠାରୁ ଦୂରତ୍ୱ ଥାଏ। ଯେଉଁଠି କିଛି କରିବାକୁ ପଡ଼େ ନାହିଁ, କେବଳ ଜାଣିବା ଅଥବା ମାନିବାକୁ ପଡ଼େ, ସେଠାରେ ସୁଲଭତା କ'ଣ ଓ ଦୁଲର୍ଭତା କ'ଣ? ସୁଗମତା କ'ଣ ଓ କଠିନତା କ'ଣ? ବର୍ତ୍ତମାନ ଏ ବିଷୟରେ ବିଗ୍ଚର କରିବା ଯେ ଭଗବାନ ଅତ୍ୟନ୍ତ ସୁଲଭ କିପରି?

ସାକ୍ଷାତ୍ ଭଗବାନ ଶ୍ରୀକୃଷ୍ଣଙ୍କର ବାଣୀ ଯେ—

**ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ମାଂ ପ୍ରପଦ୍ୟତେ।**
**ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ॥**

(ଗୀତା ୭।୧୯)

"ଅନେକ ଜନ୍ମ ଶେଷରେ ଅର୍ଥାତ୍ ମନୁଷ୍ୟଜନ୍ମରେ 'ସବୁକିଛି ଭଗବାନ' —ଏପରି ଭାବି ଯେଉଁ ଜ୍ଞାନବାନ୍ ମୋର ଶରଣାପନ୍ନ ହୁଏ, ସେହି ମହାତ୍ମା ଅତ୍ୟନ୍ତ ଦୁର୍ଲଭ।"

ଅର୍ଥାତ୍ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା, ଘରଦ୍ୱାର, ଜମିବାଡ଼ି, ଲୁଗାପଟା ଇତ୍ୟାଦି ଯାହାକିଛି ଦେଖିବା, ଶୁଣିବା ଓ ଚିନ୍ତା କରିବାର ପରିସର ଭୁକ୍ତ ହେଉଛି, ସେସବୁ ଭଗବାନ ହିଁ ଅଟନ୍ତି। ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ—ଏ କଥା ଏହିକ୍ଷଣି ମାନିନିଅନ୍ତୁ। ସ୍ୱୟଂ ଭଗବାନ କହିଛନ୍ତି—

**ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ।**
**ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ॥**

(ଗୀତା ୭।୭)

''ହେ ଧନଞ୍ଜୟ! ମୋ'ଠାରୁ ବଳି (ଏହି ଜଗତର) ଅନ୍ୟ କୌଣସି କିଞ୍ଚିନ୍ମାତ୍ର କାରଣ ନାହିଁ । ଯେପରି ସୂତାରେ ତିଆରି ମାଳିଦାନାଗୁଡ଼ିକ ସୂତାରେ ଗୁନ୍ଥା ହୋଇଥାଆନ୍ତି, ସେହିପରି ସମଗ୍ର ଜଗତ ମୋ'ଠାରେ ହିଁ ଓତପ୍ରୋତ ।''

**ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍ ।**

(ଗୀତା ୭ । ୧୦)

''ହେ ପୃଥାନନ୍ଦନ! ମୋତେ ସମସ୍ତ ପ୍ରାଣୀଙ୍କର ଅନାଦି ବୀଜ ବୋଲି ଜାଣ ।''

**ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ ।**
**ମତ୍ତ ଏବେତି ତାନ୍ୱିଦ୍ଧି ନ ତ୍ୱହଂ ତେଷୁ ତେ ମୟି ॥**

(ଗୀତା ୭ । ୧୨)

''ଯେତେ ବି ସାତ୍ତ୍ୱିକ, ରାଜସ ଓ ତାମସ ଭାବ ଅଛି, ସେସବୁ ମୋ'ଠାରୁ ହିଁ ଉତ୍ପନ୍ନ ବୋଲି ଜାଣ । କିନ୍ତୁ ମୁଁ ସେଗୁଡ଼ିକରେ ନାହିଁ, କି ସେଗୁଡ଼ିକ ମୋ'ଠାରେ ନାହିଁ ।''

**ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।**
**ନ ତଦସ୍ତି ବିନା ଯତ୍ସ୍ୟାନ୍ମୟା ଭୂତଂ ଚରାଚରମ୍ ॥**

(ଗୀତା ୧୦ । ୩୯)

''ହେ ଅର୍ଜୁନ! ମୁଁ ହେଉଛି ସମସ୍ତ ପ୍ରାଣୀଙ୍କର ବୀଜ; କାରଣ ମୋ ବ୍ୟତୀତ କୌଣସି ଚର ବା ଅଚର ପ୍ରାଣୀ ନାହିଁ ଅର୍ଥାତ୍ ଚର-ଅଚର ସବୁକିଛି ମୁଁ ହିଁ ଅଟେ ।''

ଯେପରି ବୀଜ ହିଁ ବୃକ୍ଷରୂପ ଧାରଣ କରିଥାଏ, ସେହିପରି ଭଗବାନ ହିଁ ସଂସାର ରୂପରେ ଅଭିବ୍ୟକ୍ତ ହୋଇଛନ୍ତି । ଭଗବାନ ହିଁ ସମସ୍ତ ସ୍ଥାବର ଓ ଜଙ୍ଗମ ପ୍ରାଣୀମାନଙ୍କର ବୀଜ । କେବଳ ସେତିକି ନୁହେଁ, ଭଗବାନ ଆହୁରି ମଧ୍ୟ ଉଚ୍ଚ କଥା କହିଛନ୍ତି—**'ସଦସଚ୍ଚାହମର୍ଜୁନ'** (ଗୀତା ୯ । ୧୯) 'ସତ୍ ଓ ଅସତ୍ ମୁଁ ହିଁ ଅଟେ ।' ସଂସାରରେ ସତ୍ ଓ ଅସତ୍ ବ୍ୟତୀତ ଆଉ କିଛି ନାହିଁ । ସଂସାର ଅସତ୍ ଓ ସେଥିରେ ପରିବ୍ୟାପ୍ତ ପରମାତ୍ମତତ୍ତ୍ୱ ହେଉଛି ସତ୍ । ଶରୀର ଅସତ୍ ଏବଂ ସେଥିରେ ରହୁଥିବା ଜୀବାତ୍ମା ହେଉଛି ସତ୍ । ଶରୀର ଓ ସଂସାର ପରିବର୍ତ୍ତନଶୀଳ ତଥା ଜୀବାତ୍ମା ଓ ପରମାତ୍ମା ଅପରିବର୍ତ୍ତନଶୀଳ । ଶରୀର ଓ ସଂସାର ନାଶବାନ୍ ତଥା ଜୀବାତ୍ମା ଓ ପରମାତ୍ମା ଅବିନାଶୀ । ଭଗବାନ କହିଛନ୍ତି

ଯେ ପରିବର୍ତ୍ତନଶୀଳ ମଧ୍ୟ ମୁଁ ଏବଂ ଅପରିବର୍ତ୍ତନଶୀଳ ମଧ୍ୟ ମୁଁ; ନାଶବାନ୍ ମଧ୍ୟ ମୁଁ ଏବଂ ଅବିନାଶୀ ମଧ୍ୟ ମୁଁ । ଅର୍ଜୁନ ମଧ୍ୟ କହିଛନ୍ତି—**'ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍'** (ଗୀତା ୧୧ । ୩୭) 'ସତ୍ ମଧ୍ୟ ଆପଣ, ଅସତ୍ ମଧ୍ୟ ଆପଣ ଏବଂ ସତ୍-ଅସତ୍‌ରୁ ଅତୀତ ଯାହାକିଛି ଅଛି, ତାହା ମଧ୍ୟ ଆପଣ।''

ତା'ହେଲେ ଭଗବାନଙ୍କୁ ପାଇବାରେ ବିଳମ୍ବ ଓ ପରିଶ୍ରମର ପ୍ରଶ୍ନ କାହିଁ? ଗଙ୍ଗାକୁ ଗଙ୍ଗା ବୋଲି ଜାଣିଯିବାରେ ବିଳମ୍ବ କ'ଣ? ପରିଶ୍ରମ କ'ଣ? ଭଗବାନ ତ ଗଙ୍ଗାଠାରୁ ମଧ୍ୟ ଆହୁରି ବିଚିତ୍ର। ଗଙ୍ଗା ତ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନବିଶେଷରେ ପ୍ରବାହିତ, କିନ୍ତୁ ଭଗବାନ ସର୍ବତ୍ର ପରିପୂର୍ଣ୍ଣ। ଭଗବାନ ନିଜେ କହିଛନ୍ତି ଯେ ମୁଁ ହିଁ ସବୁକିଛି, ମୋ ବ୍ୟତୀତ ଆଉ କିଛି ନାହିଁ—**'ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ'** (ଗୀତା ୭ । ୭)।ଯଦି କେହି କହେ ଯେ ଏ କଥାରେ ମୋର ବିଶ୍ୱାସ ହେଉ ନାହିଁ, ତେବେ ଏହା ତାହାର ନ୍ୟୂନତା, ତତ୍ତ୍ୱରେ କୌଣସି ନ୍ୟୂନତା ନାହିଁ। ଯଦି ଭଗବାନଙ୍କ ଉପରେ ବିଶ୍ୱାସ କରିବେ ନାହିଁ, ତେବେ କଣ କ୍ଷଣଭଙ୍ଗୁର ଓ ନାଶବାନ୍ ଶରୀର ଉପରେ ବା ସଂସାର ଉପରେ ବିଶ୍ୱାସ କରିବେ? ଭଗବାନଙ୍କ ବଚନରେ ବିଶ୍ୱାସ ନ କରି କଲ୍ୟାଣ (ଉଦ୍ଧାର) ଆଶା କରିବା ନିହାତି ମୂର୍ଖତା। ଏହା ଆଦୌ ସମ୍ଭବ ନୁହେଁ। ଭଗବାନଙ୍କ ବଚନରେ ବିଶ୍ୱାସ ନ କରିବା ଭଗବାନଙ୍କ ପ୍ରତି ତିରସ୍କାର ଓ ଅପରାଧ ଅଟେ। ତାଙ୍କ ବଚନକୁ ଆମେ ବୁଝି ନ ପାରିଲେ ଏ କଥା ଦୃଢ଼ତାର ସହିତ ମାନିନେବା ଉଚିତ ଯେ ଆମ ବୁଝିବାରେ ଭୁଲ ରହିଛି, ତତ୍ତ୍ୱରେ କୌଣସି ନ୍ୟୂନତା ନାହିଁ। ତେଣିକି ଅନୁଭବ ହୋଇଯିବ। କାରଣ ସତ କଥା ସବୁବେଳେ ସତ ହୋଇ ରହିବ, କଦାପି ମିଛ ହୋଇ ପାରିବ ନାହିଁ। ହୁଏତ ଆମେ ବୁଝି ନ ପାରୁ, ଆମ ବିଗ୍ରହ ଦୃଷ୍ଟିରେ ସେ କଥା ସତ ଲାଗି ନ ପାରେ, କିନ୍ତୁ ସବୁକିଛି ଯେ ଭଗବାନ, ଏଥିରେ କୌଣସି ସନ୍ଦେହ ନାହିଁ।

ଜ୍ଞାନମାର୍ଗରେ କୁହାଯାଏ ଯେ ଯାହା କିଛି ଦେଖିବା, ଶୁଣିବା, ଭାବିବା ଭିତରେ ଆସିପାରୁଛି, ସବୁ ଅସତ୍ ମାୟା ଅଟେ—

**କିଂ ଭଦ୍ରଂ କିମଭଦ୍ରଂ ବା ଦ୍ୱୈତସ୍ୟାବସ୍ତୁନଃ କିୟତ୍।**
**ବାଚୋଦିତଂ ତଦନୃତଂ ମନସା ଧ୍ୟାତମେବ ଚ ॥**

(ଶ୍ରୀମଭା. ୧୧ । ୨୮ । ୪)

''ସଂସାରର ସମସ୍ତ ବସ୍ତୁ ବାଣୀରେ ପ୍ରକାଶିତ ହୋଇପାରେ ଏବଂ ମନ ଦ୍ୱାରା ସେଗୁଡ଼ିକର ଚିନ୍ତନ କରାଯାଇ ପାରେ, ତେଣୁ ସେସବୁ ଅସତ୍ୟ । ଯଦି ଦ୍ୱୈତ ବୋଲି କିଛି ନାହିଁ, ତେବେ ସେଥିରେ ଭଲ କ'ଣ ଓ ମନ୍ଦ କ'ଣ?''

**ଦେଖିଅ ସୁନିଅ ଗୁନିଅ ମନ ମାହୀଁ । ମୋହ ମୂଲ ପରମାରଥୁ ନାହୀଁ ॥**

(ମାନସ, ଅଯୋଧ୍ୟା. ୯୨ । ୪)

**ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ ।**
**ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ତ୍ରିଭିର୍ଗୁଣୈଃ ॥**

(ଗୀତା ୧୮ । ୪୦)

''ପୃଥିବୀରେ ବା ସ୍ୱର୍ଗରେ ଅଥବା ଦେବତାମାନଙ୍କ ଠାରେ ତଥା ଏତଦ୍‌ବ୍ୟତୀତ ଅନ୍ୟ କେଉଁଠି ବି ଏପରି କୌଣସି ବସ୍ତୁ ନାହିଁ, ଯାହା ଏହି ପ୍ରକୃତିଜନିତ ତିନିଗୁଣରୁ ମୁକ୍ତ ହୋଇଥିବ ।''

କିନ୍ତୁ ଭକ୍ତିମାର୍ଗରେ କୁହାଯାଏ ଯେ ଯାହାକିଛି ଦେଖିବା, ଶୁଣିବା ଓ ଚିନ୍ତନ କରିବା ଆଦି ଭିତରେ ଆସିପାରୁଛି, ସବୁକିଛି ଭଗବାନ—

**ମନସା ବଚସା ଦୃଷ୍ଟ୍ୟା ଗୃହ୍ୟତେଽନ୍ୟୈରପୀନ୍ଦ୍ରିୟୈଃ ।**
**ଅହମେବ ନ ମତ୍ତୋଽନ୍ୟଦିତି ବୁଧ୍ୟଧ୍ୱମଞ୍ଜସା ॥**

(ଶ୍ରୀମଦ୍ଭା. ୧୧ । ୧୩ । ୨୪)

''ମନ, ବାଣୀ ଓ ଦୃଷ୍ଟି ଦ୍ୱାରା ତଥା ଅନ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା କିଛି (ଶବ୍ଦାଦି ବିଷୟ) ଗ୍ରହଣ କରାଯାଏ, ସେସବୁ ମୁଁ ହିଁ ଅଟେ । ଏଣୁ ମୋ ବ୍ୟତୀତ ଅନ୍ୟ କିଛି ନାହିଁ—ଏହି ସିଦ୍ଧାନ୍ତକୁ ବିଚାରପୂର୍ବକ ଶୀଘ୍ର ବୁଝି ନିଅନ୍ତୁ ଅର୍ଥାତ୍ ସ୍ୱୀକାର କରି ନିଅନ୍ତୁ ।''

**ଜଡ଼ ଚେତନ ଜଗ ଜୀବ ଜତ ସକଲ ରାମମୟ ଜାନି ।**

(ମାନସ, ବାଲ. ୭)

**ନ ତଦସ୍ତି ବିନା ଯତ୍ସ୍ୟାନ୍ମୟା ଭୂତଂ ଚରାଚରମ୍ ॥**

(ଗୀତା ୧୦ । ୩୯)

''ମୋ ବିନା କୌଣସି ଚର ବା ଅଚର ପ୍ରାଣୀ ନାହିଁ ।''

ତାତ୍ପର୍ଯ୍ୟ ହେଲା ଯେ ଜ୍ଞାନମାର୍ଗରେ ସବୁକିଛି ପ୍ରକୃତିରୂପ ଏବଂ ଭକ୍ତିମାର୍ଗରେ ସବୁକିଛି ଭଗବଦ୍‌ରୂପ ।

ଜ୍ଞାନମାର୍ଗ ଜଡ଼ତାକୁ ତ୍ୟାଗ କରିବାରେ ଉପଯୋଗୀ ହୁଏ ଏବଂ ଭକ୍ତିମାର୍ଗ ଭଗବଦ୍‌ପ୍ରେମ ପ୍ରାପ୍ତିରେ ଉପଯୋଗୀ ହୁଏ । ଜ୍ଞାନମାର୍ଗ ଅନୁସାରେ ପରମାତ୍ମା

ସଂସାରରେ ପରିବ୍ୟାପ୍ତ—**'ଯେନ ସର୍ବମିଦଂ ତତମ୍'** (ଗୀତା ୨ । ୧୭), **'ଈଶାବାସ୍ୟମିଦଂ ସର୍ବମ୍'** (ଈଶ. ୧) ଏବଂ ଭକ୍ତିମାର୍ଗ ଅନୁସାରେ ସଂସାରରୂପରେ ପରମାତ୍ମା ହିଁ ବିରାଜମାନ—**'ବାସୁଦେବଃ ସର୍ବମ୍'** (ଗୀତା ୭ । ୧୯) । ଜ୍ଞାନମାର୍ଗ ଅନୁସାରେ ଗୁଣମାନେ ହିଁ ଗୁଣମାନଙ୍କରେ ପ୍ରବର୍ତ୍ତିତ ହେଉଛନ୍ତି—**'ଗୁଣା ଗୁଣେଷୁ ବର୍ତ୍ତନ୍ତେ'** (ଗୀତା ୩ । ୨୮) ଏବଂ ଭକ୍ତିମାର୍ଗ ଅନୁସାରେ ଭଗବାନ ହିଁ ଭଗବାନଙ୍କ ଠାରେ ପ୍ରବର୍ତ୍ତିତ ହେଉଛନ୍ତି ଅର୍ଥାତ୍ ଲୀଳା କରୁଛନ୍ତି—**'ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି'** (ଗୀତା ୬ । ୩୦) । ଜ୍ଞାନମାର୍ଗରେ ସାଧକ ନିଜ ସ୍ୱରୂପରେ ସ୍ଥିତ ହୁଏ ଏବଂ ଭକ୍ତିମାର୍ଗରେ ସାଧକ ଭଗବାନଙ୍କ ନିକଟରେ ସମର୍ପିତ ହୋଇଯାଏ, ଭଗବାନଙ୍କର ପ୍ରେମୀ ହୋଇଯାଏ । ଭଗବାନ ହେଉଛନ୍ତି ପ୍ରେମପିପାସୁ, ସେ ଜ୍ଞାନ ପାଇଁ ଲାଳାୟିତ ନୁହନ୍ତି । ଭକ୍ତ ଭଗବାନଙ୍କୁ ପ୍ରେମ କରେ ଏବଂ ଭଗବାନ ଭକ୍ତକୁ ପ୍ରେମ କରନ୍ତି; ଏହିପରି ଦୁହିଙ୍କ ମଧ୍ୟରେ ପ୍ରେମ ପ୍ରତିକ୍ଷଣ ବୃଦ୍ଧି ପାଉଥାଏ ।

ସବୁକିଛି ଭଗବାନ—ଏ କଥାକୁ କେହି ଜାଣିବାକୁ ଚାହୁଁଥିଲେ ଏକାନ୍ତରେ ବସି ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ଆରମ୍ଭ କରିଦିଅନ୍ତୁ ଯେ, ହେ ପ୍ରଭୁ! ମୁଁ ଆପଣଙ୍କୁ କିପରି ଜାଣିବି—**'କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍'** (ଗୀତା ୧୦ । ୧୭)? 'ସବୁକିଛି ଆପଣ' ବୋଲି ମୁଁ କିପରି ଜାଣିବି? କିପରି ଜାଣିବି? କିପରି ଜାଣିବି? ଏହିପରି ହୃଦୟରେ ତୀବ୍ର ଉତ୍କଣ୍ଠା ଜାଗ୍ରତ କରନ୍ତୁ । ଗୋଟିଏ କାହାଣୀ ଅଛି । କୌଣସି ଗାଁରେ ଜଣେ ଅତି ଗରିବ ଲୋକ ଥିଲା । ସେ ଥରେ କୌଣସି ମହାତ୍ମାଙ୍କ ପାଖକୁ ଯାଇ କହିଲା—"ମହାରାଜ! ମୋ ଉପରେ ବହୁତ କରଜଭାର ବଢ଼ିଗଲାଣି । ଖାଇବା, ପିଇବା, ଘରଦ୍ୱାର, ଲୁଗାପଟା ଇତ୍ୟାଦିର ଖର୍ଚ୍ଚ ଚଳାଇବାକୁ ବହୁତ ଅସୁବିଧା ହେଉଛି । ଏପରି ଦୟା କରନ୍ତୁ, ଯେମିତି ମୋର କରଜ ଶୁଝିଯିବ ।" ମହାତ୍ମା ପଚାରିଲେ—"ତୋ ଘରେ ସବୁଠୁ ବଡ଼ ଜିନିଷ କ'ଣ ଅଛି?" ସେ କହିଲା—"ଗୋଟିଏ ବଡ଼ ପଥର ଅଛି, ତାହା ଉପରେ ବସି ମୁଁ ପ୍ରତିଦିନ ସ୍ନାନ କରୁଛି । ତା'ଠାରୁ ବଡ଼ ଜିନିଷ ଆଉ କିଛି ନାହିଁ ।" ମହାତ୍ମା କହିଲେ—"ତୁ ଏବେ ଯାଇ ଗୋଟିଏ ଜାଗାରେ ବସିଯିବୁ ଏବଂ ବାରମ୍ବାର ଏମିତି କହିଚାଲିବୁ ଯେ, ଏହି ପଥରଟି ସୁନା ପାଲଟିଯାଉ......ସୁନା ପାଲଟିଯାଉ......ସୁନା ପାଲଟିଯାଉ......ସୁନା ପାଲଟିଯାଉ! ସେତିକି ସୁନାରେ

ତୋର କାମ ଚଳିଯିବ ତ?'' ସେ କହିଲା—''ମହାରାଜ! କରଜ ତ ତାହାର ଗୋଟିଏ ଛୋଟ ଖଣ୍ଡରେ ଶୁଝିଯିବ!'' ମହାତ୍ମା କହିଲେ—''ତୁ ଏବେ ଯା', ପୂରା ଚବିଶ ଘଣ୍ଟା ପର୍ଯ୍ୟନ୍ତ ଏହିପରି କହିବୁ।'' ସେହି ଲୋକଟି ଘରକୁ ଗଲା ଏବଂ ସେହିଭଳି କହିବା ଆରମ୍ଭ କରିଦେଲା। ଏପରି କହି କହି ତେଇଶ ଘଣ୍ଟା ବିତିଗଲା। ସେ ଦେଖିଲା ଯେ ଏପର୍ଯ୍ୟନ୍ତ ତ ପଥରର ଛୋଟିଆ ଅଂଶଟିଏ ବି ସୁନା ପାଲଟି ନାହିଁ। ତଥାପି ସେ ସେମିତି 'ପଥରଟି ସୁନା ପାଲଟିଯାଉ' ବୋଲି ବାରମ୍ବାର କହୁଥାଏ। ଚବିଶ ଘଣ୍ଟା ପୂର୍ଣ୍ଣ ହେବାକୁ ପାଞ୍ଚ ଦଶ ମିନିଟ୍ ବାକି ଥାଏ, ସେତେବେଳଯାଏ ମଧ୍ୟ ପଥରଟି ସୁନା ପାଲଟି ନ ଥାଏ। ତଥାପି ସେ ସେମିତି କହିଚାଲିଥାଏ। ଯେତେବେଳେ ଆଉ ମାତ୍ର ଗୋଟିଏ ମିନିଟ୍ ରହିଲା, ସେତେବେଳେ ସେ କହି କହି ଅତି ଅଧୈର୍ଯ୍ୟ ହୋଇ ପଡ଼ିଲା ଏବଂ କହି ଉଠିଲା—'ସୁନା ନ ହେଲା ନାହିଁ, ଲୁହା ଭଲା ହୋଇଯାଉ'! ଏତିକି କହିବାମାତ୍ରେ ପଥରଟି ଲୁହା ପାଲଟିଗଲା! ଆଶ୍ଚର୍ଯ୍ୟରେ ପଡ଼ିଯାଇ ସେ ମହାତ୍ମାଙ୍କ ନିକଟକୁ ଯାଇ କହିଲା—''ମହାରାଜ! ପଥରଟି ଲୁହା ହୋଇଗଲା କେମିତି? ତାହା ହୁଏତ ସେମିତି ପଥର ହୋଇ ରହିଥାନ୍ତା, ନ ହେଲେ ସୁନା ପାଲଟି ଯାଇଥାନ୍ତା, ହେଲେ ଲୁହା ପାଲଟିଗଲା କିପରି?'' ମହାତ୍ମା କହିଲେ—''ତୁମେ ନିଶ୍ଚୟ ସେମିତି କହିଥିବ, ସେଥିପାଇଁ ସିନା ଲୁହା ପାଲଟିଗଲା!'' ଲୋକଟି ସବୁ ବୃତ୍ତାନ୍ତ ଶୁଣାଇଲା। ମହାତ୍ମା ଜଣକ ସବୁ କଥା ଶୁଣି କହିଲେ—''ତୁମେ ଅଧୈର୍ଯ୍ୟ ହୋଇ ପଡ଼ିଲ ଏବଂ 'ଲୁହା ପାଲଟିଯାଉ' ବୋଲି କହିଦେଲ, ସେଥିପାଇଁ ଲୁହା ହୋଇଗଲା। ତୁମେ ଯଦି ବ୍ୟସ୍ତ ନ ହୋଇ 'ପଥରଟି ସୁନା ପାଲଟିଯାଉ' ବୋଲି କହିଚାଲିଥାନ୍ତ, ତେବେ ତାହା ସୁନା ପାଲଟି ଯାଇଥାନ୍ତା; କାରଣ ସେହି ମୁହୂର୍ତ୍ତଟି ହିଁ ଏଭଳି କହିବାର ଉପଯୁକ୍ତ ସମୟ ଥିଲା।

ଉକ୍ତ ସିଦ୍ଧାନ୍ତ ଭଳି ସାଧକ ଅଧୈର୍ଯ୍ୟ ନ ହୋଇ ଆଠ ପ୍ରହର ଭଗବାନଙ୍କ ନିକଟରେ ଅଳି କରିବା ଉଚିତ। ତାଙ୍କୁ ପ୍ରାର୍ଥନା କରି କହିବା ଉଚିତ ଯେ ହେ ପ୍ରଭୁ! ମୁଁ ତୁମକୁ କେମିତି ଜାଣିବି? ହେ ଭଗବାନ! ମୁଁ ତୁମକୁ କେମିତି ଜାଣିବି? ସମସ୍ତେ ଏଭଳି ପ୍ରାର୍ଥନା କରିପାରିବେ; କାରଣ ଭଗବାନଙ୍କର ଅଂଶ ହୋଇଥିବାରୁ ଭଗବାନଙ୍କ ଉପରେ ସମସ୍ତଙ୍କର ଅଧିକାର ରହିଛି। ଭୋକ ଲାଗିଲେ ଖାଆନ୍ତୁ, ଶୋଷ ଲାଗିଲେ ପାଣି ପିଅନ୍ତୁ, ନିଦ ମାଡ଼ିଲେ ଶୋଇପାଆନ୍ତୁ,

କିନ୍ତୁ ନିଜର ପ୍ରକୃତ ଲକ୍ଷ୍ୟକୁ ଭୁଲନ୍ତୁ ନାହିଁ । ମନ ଲାଗୁ  ବା ନ ଲାଗୁ, ଧ୍ୟାନ ହେଉ ବା ନ ହେଉ, କିନ୍ତୁ ପ୍ରାର୍ଥନା ଛାଡ଼ନ୍ତୁ ନାହିଁ । ଭଗବାନ ବଡ଼ ଦୟାଳୁ, ସେ ପ୍ରତ୍ୟେକ ପ୍ରାଣୀର ସୁହୃଦ୍—**'ସୁହୃଦଂ ସର୍ବଭୂତାନାମ୍'** (ଗୀତା ୫ । ୨୯) । ଦୟାଳୁ ଭଗବାନ ଦୟାକରି ନିଜକୁ ଜଣାଇଦେବେ । ପଥରଟି ବାସ୍ତବରେ ସୁନା ନ ଥିଲା, ବରଂ ପରେ ସୁନା ହୋଇଥାନ୍ତା; କିନ୍ତୁ ସଂସାର ଭଗବତ୍‌ସ୍ୱରୂପ ହୁଏ ନାହିଁ, ତାହା ତ ସ୍ୱାଭାବିକଭାବେ ଭଗବତ୍‌ସ୍ୱରୂପ । କେବଳ ନିଜର ଧାରଣା ବଦଳାଇଦେଲେ ହେଲା । ସେଥିପାଇଁ ଗୋପୀମାନେ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି—**'ଦୟିତ ଦୃଶ୍ୟତାମ୍'** (ଶ୍ରୀମଭା. ୧୦ । ୩୧ । ୧) 'ହେ ପ୍ରିୟତମ! ତୁମେ ଦର୍ଶନ ଦିଅ!' ପ୍ରାର୍ଥନା ଶୁଣି ଭଗବାନ ସେମାନଙ୍କୁ ଦର୍ଶନ ଦେଲେ, ସେମାନଙ୍କ ମଝିରେ ଆବିର୍ଭୂତ ହୋଇଗଲେ—**'ତାସାମାବିରଭୂଚ୍ଛୌରିଃ'** (ଶ୍ରୀମଭା. ୧୦ । ୩୨ । ୨) । ଏହାଠାରୁ ବଳି ସରଳ ଉପାୟ ଆଉ କ'ଣ ଥାଇପାରେ?

**ପ୍ରଶ୍ନ**—କେହି ଆମକୁ ଗାଳି ଦେଉଥିଲେ ଆମେ ସେଠାରେ ଭଗବାନଙ୍କୁ କିପରି  ଦେଖିବୁ?

**ଉତ୍ତର**—ଉପନିଷଦ୍‌ରେ ଅଛି ଯେ ଶବ୍ଦ (ବାଣୀ) ହିଁ ବ୍ରହ୍ମ—**'ବାଗ୍ ବୈ ବ୍ରହ୍ମେତି'** (ବୃହଦା. ୪ । ୧ । ୨) । ସନ୍ଥଜନଙ୍କ ବାଣୀରେ ମଧ୍ୟ କୁହାଯାଇଛି—

**ଜୋ ତୂ ଚେଲା ଦେହ କୋ, ଦେହ ଖେହ କୀ ଖାନ ।**
**ଜୋ ତୂ ଚେଲା ସବଦ କୋ, ସବଦ ବ୍ରହ୍ମ କର ମାନ ॥**

ଅତଏବ ଶବ୍ଦ ଭଗବାନଙ୍କର ହିଁ ସ୍ୱରୂପ । କେହି ଭଲ କହୁ ବା ମନ୍ଦ କହୁ, ସେହି ବାଣୀ ହେଉଛି ଭଗବାନ । ବରାହ ଅବତାରରେ ଭଗବାନ ଘୁଷୁରି ହୁଅନ୍ତି ଏବଂ ବାମନ ଅବତାରରେ ବ୍ରହ୍ମଚାରୀ ବ୍ରାହ୍ମଣ ହୁଅନ୍ତି । ଘୁଷୁରି ଓ ବ୍ରାହ୍ମଣ ଉଭୟେ ଭଗବାନ । ଯଦି ଘୁଷୁରି ମଧ୍ୟ ଭଗବାନ, ତେବେ ଗାଳି କ'ଣ ଭଗବାନ ନୁହେଁ?

ଯିଏ ଯେପରି ବ୍ୟବହାର କରୁ ନା କାହିଁକି, କିନ୍ତୁ ଆପଣ **'ବାସୁଦେବଃ ସର୍ବମ୍'** ଭାବନାକୁ ଛାଡ଼ନ୍ତୁ ନାହିଁ । ଜଣେ ସାଧୁ ନଦୀରେ ଗାଧୋଉଥିଲେ । ଗୋଟିଏ ବିଛା ଜଳସ୍ରୋତରେ ଭାସିଯାଉଥିଲା । ସେ ହାତରେ ବିଛାଟିକୁ ଜଳସ୍ରୋତରୁ ବାହାରକୁ ବାହାର କରିବା ପାଇଁ ଚେଷ୍ଟା କରିବାରୁ ବିଛାଟି ତାଙ୍କ ହାତରେ ନାହୁଡ଼ ମାରିଦେଲା । ସାଧୁ ଆଘାତ ପାଇବାରୁ ବିଛାଟି ତାଙ୍କ ହାତରୁ ଖସି ପଡ଼ିଲା ଏବଂ ଜଳସ୍ରୋତରେ ପଡ଼ି ପୁଣି ଛଟପଟ ହେଲା । ସାଧୁ

ଜଣକ ବିଛାଟିକୁ ବାରମ୍ବାର ବାହାର କରିବାକୁ ଚେଷ୍ଟା କରୁଥାନ୍ତି ଏବଂ ବିଛାଟି ତାଙ୍କୁ ବାରମ୍ବାର ଆଘାତ କରୁଥାଏ । ଜଣେ ଲୋକ ଏହା ଦେଖୁଥିଲା । ସେ କହିଲା—ତୁମେ କେମିତିକା ମୂର୍ଖ ମ! ବିଛାଟା ବାରମ୍ବାର ମାରୁଛି, ଅଥଚ ତୁମେ ତାହାକୁ ବାରମ୍ବାର ସ୍ପର୍ଶ କରୁଛ! ସାଧୁ କହିଲେ—ବିଛାର ସ୍ୱଭାବ ହେଲା, କେହି ତାକୁ ଛୁଇଁଲେ ସେ ତାକୁ ନାହୁଡ଼ ମାରିବ ଏବଂ ମୋର ସ୍ୱଭାବ ହେଲା, କେହି ମୃତ୍ୟୁମୁଖରେ ପଡ଼ିଥିଲେ ମୁଁ ତାକୁ ବଞ୍ଚାଇବାକୁ ଚେଷ୍ଟା କରିବି । ଯଦି ବିଛା ତା'ର ଖରାପ ସ୍ୱଭାବକୁ ମଧ୍ୟ ଛାଡୁ ନାହିଁ, ତେବେ ମୁଁ ମୋର ଭଲ ସ୍ୱଭାବକୁ ଛାଡ଼ିବି କାହିଁକି? କହିବାର ଉଦ୍ଦେଶ୍ୟ ହେଲା, ଯଦି ଦୁଷ୍ଟ ଲୋକ ନିଜର ଖରାପ ଭାବନା ଛାଡୁ ନାହିଁ, ତେବେ ଆପଣ ଆପଣଙ୍କର ଭଲ ଓ ସର୍ବଶ୍ରେଷ୍ଠ ଭାବନାକୁ ଛାଡ଼ିବେ କାହିଁକି?

**ପ୍ରଶ୍ନ**—ଶାସ୍ତ୍ରମାନଙ୍କରେ ସଂସାରକୁ ଅସତ୍ୟ କୁହାଯାଇଛି କାହିଁକି? 'ସବୁକିଛି ଭଗବାନ' ବୋଲି ସବୁଠାରେ କୁହାଯାଇ ନାହିଁ କାହିଁକି?

**ଉତ୍ତର**—ଆପଣ ସଂସାରରୁ ସୁଖ ଗ୍ରହଣ କରିବାକୁ ଚାହୁଁଛନ୍ତି, ସେଥିପାଇଁ ତାହାକୁ ଅସତ୍ୟ କୁହାଯାଇଛି । ଝାପସା ଅନ୍ଧାରରେ ଦଉଡ଼ି ସାପ ଭଳି ଦେଖାଯାଏ । ତାହାକୁ ଦେଖି ଡରିଯାଉଥିବା ଲୋକକୁ କୁହାଯାଏ ଯେ 'ଡର ନାହିଁ, ଏହା ସାପ ନୁହେଁ, ଗୋଟେ ଦଉଡ଼ି ।' କିନ୍ତୁ ଯିଏ ତାହାକୁ ଦେଖି ଡରେ ନାହିଁ, ତାକୁ କେବଳ ଏତିକି କହିବା ଯଥେଷ୍ଟ ଯେ 'ଏହା ଗୋଟେ ଦଉଡ଼ି' । ସେହିପରି ଯିଏ ସଂସାରରୁ ସୁଖ ଆଶା କରେ ଏବଂ ଯାହା ଅନ୍ତରରେ ଏହି ପ୍ରଭାବ ପଡ଼ିଛି ଯେ 'ସଂସାର ସତ୍ୟ ଓ ସୁଖରୂପ', ତା' ପାଇଁ ଭଗବାନ କହିଛନ୍ତି ଯେ ସଂସାର ଦୁଃଖାଳୟ ଓ ନାଶବାନ୍—**'ଦୁଃଖାଳୟମଶାଶ୍ୱତମ୍'** (ଗୀତା ୮ । ୧୫) । କିନ୍ତୁ ଯିଏ ସଂସାରରୁ ସୁଖ ଆଶା କରେ ନାହିଁ, ଯାହା ଉପରେ ସଂସାରର ପ୍ରଭାବ ନାହିଁ, ତା' ପାଇଁ କହିଛନ୍ତି ଯେ ସବୁକିଛି ଭଗବାନ—**'ବାସୁଦେବଃ ସର୍ବମ୍'** (ଗୀତା ୭ । ୧୯) ।

ସଂସାର ପ୍ରକୃତିର କାର୍ଯ୍ୟ ଏବଂ ପ୍ରକୃତି ହେଉଛି ଭଗବାନଙ୍କର ଶକ୍ତି—

**ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ ।**
**ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ॥**

(ଗୀତା ୭ । ୪)

''ପୃଥିବୀ, ଜଳ, ତେଜ, ବାୟୁ, ଆକାଶ—ଏହି ପଞ୍ଚମହାଭୂତ ଏବଂ ମନ, ବୁଦ୍ଧି ତଥା ଅହଂକାର—ମୋର ଅପରା ପ୍ରକୃତି ଏଭଳି ଆଠ ପ୍ରକାର ଭେଦଯୁକ୍ତ ।''

**ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରମ୍ ।'**

(ଶ୍ୱେତାଶ୍ୱତର. ୪ । ୧୦)

''ପ୍ରକୃତିକୁ ମାୟା ଏବଂ ମହେଶ୍ୱରଙ୍କୁ ମାୟାଧିପତି ବୋଲି ବୁଝିବା ଉଚିତ ।''

ଭଗବାନଙ୍କର ଶକ୍ତି ହୋଇଥିବାରୁ ପ୍ରକୃତି ଓ ତାହାର କାର୍ଯ୍ୟ ଭଗବଦ୍‌ସ୍ୱରୂପ ଅଟେ; କାରଣ ଶକ୍ତି ଶକ୍ତିମାନ୍‌ଠାରୁ ପୃଥକ୍ ହେବା ସମ୍ଭବ ନୁହେଁ । ଯେପରି ଶରୀରର ଗୋରା ବା କଳା ରଙ୍ଗକୁ ଶରୀରଠାରୁ ଅଲଗା କରାଯାଇ ପାରିବ ନାହିଁ ତଥା ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଅବସ୍ଥାକୁ ଶରୀରଠାରୁ ଅଲଗା କରାଯାଇ ପାରିବ ନାହିଁ, ସେହିପରି ପ୍ରକୃତିକୁ ଭଗବାନଙ୍କ ଠାରୁ ଅଲଗା କରାଯାଇ ପାରିବ ନାହିଁ । ମନୁଷ୍ୟ ଯେପରି ନିଜର ଶକ୍ତି (ବଳ, ବିଦ୍ୱତ୍ତା, ଯୋଗ୍ୟତା, ଚାତୁର୍ଯ୍ୟ, ସାମର୍ଥ୍ୟ ଆଦି) ବିନା ରହିପାରେ, କିନ୍ତୁ ଶକ୍ତି ମନୁଷ୍ୟ ବିନା ରହିପାରେ ନାହିଁ, ସେହିପରି ଭଗବାନ ଶକ୍ତି ବିନା ରହି ପାରନ୍ତି, କିନ୍ତୁ ଶକ୍ତି ଭଗବାନଙ୍କ ବିନା ରହିପାରେ ନାହିଁ । କହିବାର ଉଦ୍ଦେଶ୍ୟ ହେଲା, ଶକ୍ତି ଭଗବାନଙ୍କର ଅଧୀନ (ଆଶ୍ରିତ), କିନ୍ତୁ ଭଗବାନ ଶକ୍ତିର ଅଧୀନ ନୁହନ୍ତି । ଶକ୍ତିମାନ୍ ବିନା ଶକ୍ତିର ସ୍ୱତନ୍ତ୍ର ସତ୍ତା ନ ଥାଏ । ଏଣୁ ଭଗବାନଙ୍କର ଶକ୍ତି ହୋଇଥିବାରୁ ପ୍ରକୃତିର ମଧ୍ୟ ସ୍ୱତନ୍ତ୍ର ସତ୍ତା ନାହିଁ ।

ବାସ୍ତବରେ ପରମାତ୍ମାଙ୍କର ସ୍ୱରୂପ ହେଉଛି ସମଗ୍ର । ପରମାତ୍ମାଙ୍କ ଠାରେ କୌଣସି ଶକ୍ତି ଯେ ନ ଥିବ, ଏହା ଅସମ୍ଭବ । ଯଦି ପରମାତ୍ମାଙ୍କୁ ସମ୍ପୂର୍ଣ୍ଣ ଶକ୍ତିବିହୀନ ମନେ କରିବା, ତେବେ ସେ ଏକଦେଶୀୟ ପ୍ରମାଣିତ ହେବେ । ତାଙ୍କଠାରେ ଶକ୍ତିର ପରିବର୍ତ୍ତନ ବା ଅଦର୍ଶନ ହୋଇପାରେ, କିନ୍ତୁ ଶକ୍ତିର ଅଭାବ ହେବା ଅସମ୍ଭବ । କାରଣରୂପେ ତାଙ୍କଠାରେ ଶକ୍ତି ଅବଶ୍ୟ ରହିଥାଏ, ନଚେତ୍ ଶକ୍ତି (ପ୍ରକୃତି) ପାଇଁ ଆଉ ସ୍ଥାନ କାହିଁ? ସେଥିପାଇଁ ଗୀତାରେ ପ୍ରକୃତି ଓ ପୁରୁଷ ଉଭୟକୁ 'ଅନାଦି' କୁହାଯାଇଛି—

**ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି ।** (୧୩ । ୧୯)

ବିଶ୍ୱରୂପକୁ ମଧ୍ୟ ଗୀତାରେ 'ଅବ୍ୟୟ' କୁହାଯାଇଛି—

**ଯୋଗେଶ୍ୱର ତତୋ ମେ ତ୍ୱଂ ଦର୍ଶୟାତ୍ମାନମବ୍ୟୟମ୍ ॥** (୧୧ । ୪)

**'ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା'** (୧୧ । ୧୮)

ସଂସାରରୂପକ ଅଶ୍ୱତ୍ଥ-ବୃକ୍ଷକୁ ମଧ୍ୟ 'ଅବ୍ୟୟ' କୁହାଯାଇଛି—

**ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।** (ଗୀତା ୧୫ । ୧)

ଏଥିରୁ ପ୍ରମାଣିତ ହେଲା ଯେ ଜଡ଼-ଚେତନ, ସ୍ଥାବର-ଜଙ୍ଗମରୂପରେ ଯାହା କିଛି ଦେଖାଯାଉଛି, ସେସବୁ ହେଉଛନ୍ତି ଅବିନାଶୀ ଭଗବାନ। ଭଗବାନଙ୍କ ବ୍ୟତୀତ ଆଉ କିଛି ହେଲେ ନାହିଁ। କିନ୍ତୁ ଭୋଗ ଓ ସଂଗ୍ରହ ପ୍ରତି ଆସକ୍ତି ହେତୁ ମନୁଷ୍ୟକୁ ସବୁକିଛି ଜଡ଼ମୟ ଦେଖାଯାଏ! ଜଡ଼ ସଂସାର ଅଛି କେବଳ ଜୀବ ଦୃଷ୍ଟିରେ। ବାସ୍ତବରେ ସବୁକିଛି ତତ୍ତ୍ୱତଃ ଚିନ୍ମୟ ଭଗବତ୍‌ସ୍ୱରୂପ। ଭଗବାନଙ୍କ ବ୍ୟତୀତ ମୁଁ, ତୁ, ଏ ଓ ସେ କିଛି ହେଲେ ନାହିଁ ଅର୍ଥାତ୍ 'ମୁଁ' ମଧ୍ୟ ଭଗବାନଙ୍କର ସ୍ୱରୂପ, 'ତୁ' ମଧ୍ୟ ଭଗବାନଙ୍କର ସ୍ୱରୂପ, 'ଏ' ମଧ୍ୟ ଭଗବାନଙ୍କର ସ୍ୱରୂପ ଏବଂ 'ସେ' ମଧ୍ୟ ଭଗବାନଙ୍କର ସ୍ୱରୂପ। ଭଗବାନ ସୃଷ୍ଟିର ପ୍ରତ୍ୟେକ କଣିକାରେ ପୂର୍ଣ୍ଣରୂପେ ବିରାଜମାନ। ଭକ୍ତ ପ୍ରହ୍ଲାଦଙ୍କ ପ୍ରାର୍ଥନା ଶୁଣି ଭଗବାନ ନୃସିଂହରୂପରେ ସ୍ତମ୍ଭରୁ ଆବିର୍ଭୂତ ହେଲେ; କାରଣ ସେ ସେଠାରେ ଆଗରୁ ମଧ୍ୟ ଥିଲେ! ଏଣୁ ବୃକ୍ଷ, ନଦୀ, ପାହାଡ଼, ପଥର, କାଠବାଡ଼ ଇତ୍ୟାଦି ଯାହା କିଛି ଦେଖିଲେ ବି ସାଧକ ସେଥିରେ ନିଜର ଇଷ୍ଟ ପରମାତ୍ମାଙ୍କୁ ଦେଖି ପ୍ରାର୍ଥନା କରୁ ଯେ, ହେ ପ୍ରଭୁ! ମୋତେ ଆପଣ ପ୍ରେମ ପ୍ରଦାନ କରନ୍ତୁ; ହେ ପ୍ରଭୁ! ଆପଣଙ୍କୁ ମୁଁ ନମସ୍କାର କରୁଛି, ଯେପରି କି ଅର୍ଜୁନ କହିଥିଲେ—

**ବାୟୁର୍ଯମୋଽଗ୍ନିର୍ବରୁଣଃ ଶଶାଙ୍କଃ ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ।**
**ନମୋ ନମସ୍ତେଽସ୍ତୁ ସହସ୍ରକୃତ୍ୱଃ ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ॥**

"ଆପଣ ହିଁ ବାୟୁ, ଯମରାଜ, ଅଗ୍ନି, ବରୁଣ, ଚନ୍ଦ୍ର, ଦକ୍ଷାଦି ପ୍ରଜାପତି ଓ ପ୍ରପିତାମହ (ବ୍ରହ୍ମାଙ୍କର ମଧ୍ୟ ପିତା) ଅଟନ୍ତି। ଆପଣଙ୍କୁ ସହସ୍ରବାର ନମସ୍କାର! ନମସ୍କାର!! ପୁନଶ୍ଚ ଆପଣଙ୍କୁ ବାରମ୍ବାର ନମସ୍କାର! ନମସ୍କାର!!"

**ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ ନମୋଽସ୍ତୁ ତେ ସର୍ବତ ଏବ ସର୍ବ।**
**ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ॥**

(ଗୀତା ୧୧।୩୯,୪୦)

"ହେ ସର୍ବ! ଆପଣଙ୍କୁ ଆଗପଟରୁ ନମସ୍କାର! ପଛପଟରୁ ନମସ୍କାର! ସବୁଆଡୁ ନମସ୍କାର! ହେ ଅନନ୍ତବୀର୍ଯ୍ୟ! ଆପଣ ଅମିତ ବିକ୍ରମଶାଳୀ ଏବଂ ଆପଣ ସମସ୍ତଙ୍କୁ ସମାବୃତ କରି ରଖିଛନ୍ତି; ତେଣୁ ଆପଣ ହିଁ ସବୁକିଛି।"



# ୪. ଭଗବତ୍‌ପ୍ରାପ୍ତିର ସହଜ ଓ ଶୀଘ୍ର ସିଦ୍ଧିପ୍ରଦ ସାଧନ

ସାଧନା କରୁଥିବା ତଥା ପରମାତ୍ମତତ୍ତ୍ୱପ୍ରାପ୍ତି ପାଇଁ ଇଚ୍ଛା କରୁଥିବା ଭାଇଭଉଣୀଙ୍କ ମନରେ ପ୍ରାୟ ଏହି କଥାଟି ସ୍ଥାନ ପାଇଥାଏ ଯେ, କେହି ଏପରି ସିଧା ଓ ସରଳ ମାର୍ଗଟିଏ ବତାଇ ଦିଅନ୍ତା, ଯାହା ସାହାଯ୍ୟରେ ଆମେ ସହଜରେ ଓ ତତ୍‌କ୍ଷଣାତ୍ ପରମାତ୍ମାଙ୍କୁ ପାଇଯାଆନ୍ତୁ। ସେମାନଙ୍କ ପାଇଁ ଏବେ ଗୋଟିଏ ଉତ୍ତମ ସାଧନମାର୍ଗ ନିର୍ଦ୍ଦେଶିତ କରାଯାଉଛି।

ଏପରି ଗୋଟିଏ ସ୍ଥିତି ଅଛି, ଯେଉଁଠି ପହଞ୍ଚିବା ପରେ ମନୁଷ୍ୟ କୃତକୃତ୍ୟ, ଜ୍ଞାତଜ୍ଞାତବ୍ୟ ଓ ପ୍ରାପ୍ତପ୍ରାପ୍ତବ୍ୟ ହୋଇଯାଏ ଅର୍ଥାତ୍ ତା' ପାଇଁ କିଛି କରିବା, ଜାଣିବା ଓ ପାଇବା ବାକି ରହେ ନାହିଁ। ସେଠାରେ ପହଞ୍ଚିବା ପାଇଁ ତିନୋଟି ମାର୍ଗ ରହିଛି—କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ। କର୍ମଯୋଗରେ କୃତକୃତ୍ୟତା, ଜ୍ଞାନଯୋଗରେ ଜ୍ଞାତଜ୍ଞାତବ୍ୟତା ଏବଂ ଭକ୍ତିଯୋଗରେ ପ୍ରାପ୍ତପ୍ରାପ୍ତବ୍ୟତା ସ୍ଥିତି ପ୍ରାପ୍ତ ହୁଏ। ଏହା ହେଉଛି ଚରମ ସ୍ଥିତି। ଯଦି କୌଣସି ସାଧକ ସେହି ଚରମ ସ୍ଥିତିରେ ପହଞ୍ଚିବା ପାଇଁ ଦୃଢ଼ ପ୍ରତିଜ୍ଞ, ତେବେ ତା' ପାଇଁ ଏପରି ଗୋଟିଏ ସାଧନା ନିମ୍ନରେ ନିର୍ଦ୍ଦେଶ କରାଯାଉଛି, ଯାହା ସାହାଯ୍ୟରେ ସେ ସବୁ ସାଧନାରୁ ଉର୍ଦ୍ଧ୍ୱକୁ ଉଠି ସେହି ଚରମ ସ୍ଥିତିକୁ ଆରମ୍ଭରୁ ହିଁ ଅନୁଭବ କରି ପାରିବ। ଭଗବାନ ଶ୍ରୀମଦ୍ଭାଗବତରେ ଉଦ୍ଧବଙ୍କୁ କହିଛନ୍ତି—

**ସର୍ବଂ ବ୍ରହ୍ମାତ୍ମକଂ ତସ୍ୟ ବିଦ୍ୟୟାଽଽତ୍ମମନୀଷୟା।**
**ପରିପଶ୍ୟନ୍ନୁପରମେତ୍ ସର୍ବତୋ ମୁକ୍ତସଂଶୟଃ॥**
**ଅୟଂ ହି ସର୍ବକଳ୍ପାନାଂ ସଧ୍ରୀଚୀନୋ ମତୋ ମମ।**
**ମଦ୍ଭାବଃ ସର୍ବଭୂତେଷୁ ମନୋବାକ୍କାୟବୃତ୍ତିଭିଃ॥**

(୧୧।୨୯।୧୮,୧୯)

"ଯେତେବେଳେ ସମସ୍ତଙ୍କ ପ୍ରତି ଭଗବଦ୍‌ବୁଦ୍ଧି ହୋଇଯାଏ, ସେତେବେଳେ 'ସବୁକିଛି ପରମାତ୍ମା'—ଏପରି ଦେଖାଯାଏ। ତା'ପରେ ସେହି ପରମାତ୍ମଦୃଷ୍ଟିରୁ ମଧ୍ୟ ଉପରତ ହୋଇଗଲେ ସମସ୍ତ ସଂଶୟ ଆପେ ଆପେ ନିବୃତ୍ତ ହୋଇଯାଏ।"

"ମୋତେ ପାଇବା ପାଇଁ ଯେତେ ସବୁ ସାଧନା ରହିଛି, ସେଥିମଧ୍ୟରୁ ମୁଁ ଏହି ସାଧନାଟିକୁ ସର୍ବଶ୍ରେଷ୍ଠ ମନେକରେ ଯେ ସମସ୍ତ ପ୍ରାଣୀଙ୍କ ଠାରେ, ପଦାର୍ଥଗୁଡ଼ିକରେ ତଥା ମନ, ବାଣୀ ଓ ଶରୀରର ସମସ୍ତ ବୃତ୍ତିରେ ମୁଁ ବିଦ୍ୟମାନ ବୋଲି ଭାବନା କରାଯାଉ।"*

କହିବାର ଅଭିପ୍ରାୟ ହେଲା, ସର୍ବତ୍ର ଏକମାତ୍ର ପରମାତ୍ମା ହିଁ ପରିପୂର୍ଣ୍ଣ— **'ସର୍ବଂ ବ୍ରହ୍ମାତ୍ମକମ୍'**। ସେଥିରେ ମୁଁ ନ ଥାଏ, ତୁ ନ ଥାଏ, ଏ ନ ଥାଏ, ସେ ନ ଥାଏ; ଅତୀତ ନ ଥାଏ, ଭବିଷ୍ୟତ ନ ଥାଏ, ବର୍ତ୍ତମାନ ନ ଥାଏ; ସର୍ଗ ନ ଥାଏ, ପ୍ରଳୟ ନ ଥାଏ; ମହାସର୍ଗ ନ ଥାଏ, ମହାପ୍ରଳୟ ନ ଥାଏ; ଦେବତା ନ ଥାଏ, ମନୁଷ୍ୟ ନ ଥାଏ, ପକ୍ଷୀ ନ ଥାଏ; ଭୂତ ନ ଥାଏ, ପ୍ରେତ ନ ଥାଏ, ପିଶାଚ ନ ଥାଏ; ଜଡ଼ ନ ଥାଏ, ଚେତନ ନ ଥାଏ; ସ୍ଥାବର ନ ଥାଏ, ଜଙ୍ଗମ ନ ଥାଏ; କିଛି ହେଲେ ନ ଥାଏ! ଏକମାତ୍ର ପରମାତ୍ମା ହିଁ ସମସ୍ତ ରୂପରେ ଅଭିବ୍ୟକ୍ତ ହୋଇଛନ୍ତି! ଏ କଥାକୁ ଦୃଢ଼ତାର ସହିତ ମାନି ନିଅନ୍ତୁ ଓ ସ୍ୱୀକାର କରି ନିଅନ୍ତୁ। ଏହା ସମସ୍ତ ସାଧନା ମଧ୍ୟରେ ଶ୍ରେଷ୍ଠ। ଭାଗବତ ଏକାଦଶ ସ୍କନ୍ଧ ଅନ୍ତର୍ଗତ ୨୯ଶ ଅଧ୍ୟାୟର ୧୯ଶ ଶ୍ଳୋକର ଟୀକାରେ ସନ୍ଥ ଏକନାଥ ଉଦ୍ଧବଙ୍କ ପ୍ରତି ଭଗବାନଙ୍କ ବାଣୀକୁ ନିଜ ମରାଠୀ ଭାଷାରେ ଲେଖିଛନ୍ତି —ହେ ଉଦ୍ଧବ! ସମସ୍ତଙ୍କ ଠାରେ ମୋତେ ଦର୍ଶନ କରିବାଠାରୁ ବଳି ଅନ୍ୟ କୌଣସି ଶ୍ରେଷ୍ଠ ସାଧନା ନାହିଁ—ଏ କଥା ମୁଁ ମୋ ମାଆ ଦେବକୀଙ୍କର ରାଣ ପକାଇ କହୁଛି।Ψ

ସବୁକିଛି ଭଗବାନ—ଏହା ଆମକୁ ଦେଖାଯାଉ ବା ଦେଖା ନ ଯାଉ, ଆମେ ଜାଣିଥାଉ ବା ନ ଜାଣିଥାଉ, ଆମକୁ ଅନୁଭବ ହେଉ ବା ନ ହେଉ, କିନ୍ତୁ ଦୃଢ଼ତାର ସହିତ ସ୍ୱୀକାର କରିବା ଉଚିତ ଯେ ବାସ୍ତବରେ ଏହା ହିଁ ସର୍ବଶ୍ରେଷ୍ଠ କଥା। ଯଦି କୌଣସି ଊଣା ଥାଏ, ତାହା ଆମର ମାନିବାରେ

---

* ତାତ୍ପର୍ଯ୍ୟ ଏହି ଯେ ମନରେ ଭଗବାନଙ୍କୁ ଚିନ୍ତନ କରନ୍ତୁ ଏବଂ ମନରେ ଯାହା କିଛି ଆସୁଛି, ତାହାକୁ ଭଗବାନଙ୍କର ହିଁ ସ୍ୱରୂପ ମନେକରନ୍ତୁ। ବାଣୀରେ ସମ୍ମାନପୂର୍ବକ ମଧୁର ଓ ହିତ କଥା କହନ୍ତୁ। ଶରୀରରେ ସମସ୍ତଙ୍କର ସେବା କରନ୍ତୁ, ସମସ୍ତଙ୍କୁ ସୁଖ ଦିଅନ୍ତୁ, ଇତ୍ୟାଦି।

Ψ ଯାପରୀ କାୟାବାଗ୍ମନେଁ। ସର୍ବଭୂତାଁ ଭଗବଦ୍ଭଜନ। ହେଁଚି ମୁଖ୍ୟତ୍ୱେଁ ଶ୍ରେଷ୍ଠ ସାଧନ। ଭକ୍ତ ସଜ୍ଞାନ ଜାଣତୀ॥ ୩୮୦॥ ବ୍ରହ୍ମପ୍ରାପ୍ତିଚେଁ ପରମ କାରଣ ହେଁଚି ଏକ ସୁଗମ ସାଧନ। ମଜହୀ ନିଶ୍ଚୟେଁ ମାନଲେଁ ଜାଣ। ଦେବକୀଚୀ ଆଣ ଉଦ୍ଧବା॥ ୩୮୧॥

(ଏକନାଥୀ ଭାଗବତ)

ଉଣା, ବାସ୍ତବିକତାରେ କୌଣସି ଉଣା ନାହିଁ। ଯେପରି ପ୍ରଥମେ କ-ଖ-ଗ ଆଦି ଅକ୍ଷରକୁ ଆମେ ଶିଖିଥାଉ ଏବଂ ତା'ପରେ ବହି ପଢ଼ିଲେ ତାହା ସ୍ପଷ୍ଟ ହେବାକୁ ଲାଗେ, ସେହିପରି ପ୍ରଥମେ କେବଳ ଏ କଥାକୁ ମାନି ନିଅନ୍ତୁ ଯେ 'ସବୁକିଛି ଭଗବାନ ହିଁ ଅଟନ୍ତି', ତା'ପରେ ସେହିପରି ଅନୁଭବ ହେବାକୁ ଲାଗିବ। ଏଭଳି ଅନୁଭବ କରିବା ପାଇଁ କିଛି କରିବା ଦରକାର ନାହିଁ, କେଉଁଠିକି ଯିବା-ଆସିବାର ଆବଶ୍ୟକତା ନାହିଁ। ଭଜନ, ଧ୍ୟାନ, ସତ୍ସଙ୍ଗ, ସ୍ୱାଧ୍ୟାୟ ଇତ୍ୟାଦି ଯାହା କିଛି କରୁଛନ୍ତି, ସେହିପରି କରୁଥାନ୍ତୁ। ଏହାପାଇଁ ଆଉ କୌଣସି ନୂଆ ସାଧନା କରିବା ଦରକାର ନାହିଁ। କେବଳ ଦୃଢ଼ତାର ସହିତ ସ୍ୱୀକାର କରିବାକୁ ହେବ ଯେ ସବୁକିଛି ପରମାତ୍ମା। କାରଣ ସୃଷ୍ଟିସର୍ଜନା କଲାବେଳେ ଭଗବାନ ଆଉ କେଉଁଠୁ ଜିନିଷପତ୍ର ଇତ୍ୟାଦି ସାମଗ୍ରୀ ମଗାଇ ନ ଥିଲେ, କେବଳ ଏତିକି ସଙ୍କଳ୍ପ କରିଥିଲେ ଯେ, ମୁଁ ଜଣେ ଅନେକ ରୂପରେ ହୋଇଯାଏଁ—

**'ସଦୈକ୍ଷତ ବହୁ ସ୍ୟାଂ ପ୍ରଜାୟେୟେତି'** (ଛାନ୍ଦୋଗ୍ୟ. ୬।୨।୩)

**'ସୋଽକାମୟତ ବହୁ ସ୍ୟାଂ ପ୍ରଜାୟେୟେତି'** (ତୈତ୍ତିରୀୟ. ୨।୬)

**'ଏକଂ ରୂପଂ ବହୁଧା ଯଃ କରୋତି'** (କଠ. ୨।୨।୧୨)

**'ଏକୋଽପି ସନ୍ ବହୁଧା ଯୋ ବିଭାତି।'** (ଗୋପାଳପୂର୍ବତାପନୀୟ.)

ଏକମାତ୍ର ପରମାତ୍ମା ହିଁ ଅନେକ ରୂପରେ ଆବିର୍ଭୂତ ହୋଇଛନ୍ତି। ତାଙ୍କ ରୂପ ଅସଂଖ୍ୟ—**'ଅନେକରୂପରୂପାୟ ବିଷ୍ଣବେ ପ୍ରଭବିଷ୍ଣବେ।'** ଚଉରାଶୀ ଲକ୍ଷ ଯୋନି ଏବଂ ତହିଁରେ ଗୋଟିଏ ଗୋଟିଏ ଯୋନିରେ କୋଟି କୋଟି, ଅର୍ବୁଦ ଅର୍ବୁଦ ଜୀବ ଅଛନ୍ତି, ମାତ୍ର ସେମାନେ ସମସ୍ତେ ହେଲେ ଏକମାତ୍ର ପରମାତ୍ମା। ଏ କଥାକୁ ମାନି ନିଅନ୍ତୁ ଏବଂ ଯେତେଦୂର ସମ୍ଭବ ଶରୀର ଦ୍ୱାରା କାହାର ଅହିତ ହେବାଭଳି ବ୍ୟବହାର ନ କରନ୍ତୁ, ମନରେ କାହାର ଅହିତ ଚିନ୍ତା ନ କରନ୍ତୁ ଏବଂ ବାଣୀରେ କଡ଼ା କଥା କହି କାହାକୁ ଦୁଃଖ ନ ଦିଅନ୍ତୁ। ଏଥିପ୍ରତି ସାବଧାନ ରହନ୍ତୁ। କେତେବେଳେ ଭୁଲ୍ ହୋଇଗଲେ ସେହି ଲୋକର ପାଦତଳେ ପଡ଼ିଯାଇ କ୍ଷମା ମାଗନ୍ତୁ। ଭୁଲ୍ ହୋଇଗଲେ ତାହାକୁ ମାର୍ଜିତ କରି ନିଅନ୍ତୁ। ଏପରି ଅଭ୍ୟାସ କରିବାକୁ ପଡ଼ିବ। ***ଥରକୁ ଥର ପଡ଼ି ତଳେ। ଉଠଇ ଅଭ୍ୟାସର ବଳେ॥*** ଅର୍ଥାତ୍ ଶିଶୁଟି ଏକାଥରକେ ଚାଲିବା ଶିଖିପାରେ ନାହିଁ, ବରଂ ଅନେକ ଥର ତଳେ ପଡ଼ି କେତେ କଚଡ଼ା ଖାଇବା

ପରେ ଯାଇ ଚ୍ଚାଲିବା ଶିଖେ। ଏଣୁ କେବେ କୌଣସି ଭୁଲ୍ ହୋଇଗଲେ ଭବିଷ୍ୟତ ପାଇଁ ସାବଧାନ ରହନ୍ତୁ।

ଗୋଟିଏ କାହାଣୀ ଅଛି। ଥରେ ଗୋଟିଏ ସିଂହ ଜଙ୍ଗଲରେ ଗୋଟିଏ ବିଲୁଆଛୁଆକୁ ଅସହାୟ ଅବସ୍ଥାରେ ଥିବାର ଦେଖି ଦୟାପରବଶ ହୋଇ ନେଇ ଆସିଲା ଏବଂ ସିଂହୀକୁ ଦେଲା। ସିଂହୀର ଦୁଇଟି ଛୁଆ ଥିଲେ। ସେ ବିଲୁଆଛୁଆଟିକୁ ନିଜର ତୃତୀୟ ପୁତ୍ରଭାବରେ ପାଳନପୋଷଣ କଲା। ତିନୋଟି ଛୁଆ ଏକସଙ୍ଗରେ ଖେଳନ୍ତି ଏବଂ ସିଂହୀର କ୍ଷୀର ପିଅନ୍ତି। ସେମାନେ ଟିକିଏ ବଡ଼ ହୋଇଯିବାରୁ ଶିକାର ପାଇଁ ଏଣେତେଣେ ବୁଲିବାକୁ ଲାଗିଲେ। ଦିନେ ସେହି ଜଙ୍ଗଲକୁ ଗୋଟିଏ ହାତୀ ଆସିଲା। ତାକୁ ଦେଖି ବିଲୁଆଛୁଆଟି ଡରିଗଲା ଏବଂ ଘରକୁ ଦୌଡ଼ି ପଳାଇଲା। ସେ ଦୌଡ଼ି ପଳାଇବାରୁ ସିଂହଛୁଆ ଦୁଇଟି ହତୋତ୍ସାହିତ ହୋଇ ଘରକୁ ଫେରି ଆସିଲେ ଏବଂ ମାଆକୁ ବଡ଼ ଭାଇ (ବିଲୁଆଛୁଆ)ର ଭୀରୁତା କଥା କହିଲେ। ବିଲୁଆଛୁଆଟି ସେ ଦୁହିଙ୍କର ପରିହାସପୂର୍ଣ୍ଣ କଥା ଶୁଣି ରାଗରେ ତମତମ ହୋଇ କହିଲା— ମୁଁ କ'ଣ ଏ ଦୁହିଙ୍କ ଠାରୁ କୌଣସି ଗୁଣରେ ଊଣା ଯେ ଏମାନେ ମୋତେ ପରିହାସ କରୁଛନ୍ତି? ତାହାର ରାଗ ଦେଖି ସିଂହୀ ହସି ହସି କହିଲା—

**ଶୂରୋଽସି କୃତବିଦ୍ୟୋଽସି ଦର୍ଶନୀୟୋଽସି ପୁତ୍ରକ।**
**ଯସ୍ମିନ୍‌କୁଳେ ତ୍ୱମୁତ୍ପନ୍ନୋ ଗଜସ୍ତତ୍ର ନ ହନ୍ୟତେ॥**

(ପଞ୍ଚତନ୍ତ୍ର ୬, ଲବ୍ଧ. ୪୪)

"ପୁଅ ରେ! ତୁ ବଡ଼ ଯୋଦ୍ଧା, ଶିକାର କରିବାର ବିଦ୍ୟା ମଧ୍ୟ ଜାଣିଗଲୁଣି ଏବଂ ଦେଖିବାକୁ ମଧ୍ୟ ବଡ଼ ସୁନ୍ଦର, କିନ୍ତୁ ଯେଉଁ କୁଳରେ ତୁ ଜନ୍ମ ହୋଇଛୁ, ସେଠାରେ ହାତୀକୁ ମାରିବାର ରୀତି ନାହିଁ।"

ସେହିପରି ପରମାତ୍ମାଙ୍କୁ ପାଇବାର ରୀତି କେବଳ ଏହି ମନୁଷ୍ୟଜନ୍ମ ଛଡ଼ା ଅନ୍ୟ ଜନ୍ମରେ ନାହିଁ। ଗାଈ ମନୁଷ୍ୟଠାରୁ ଅଧିକ ପବିତ୍ର, ଏପରି କି ତାହାର ଗୋବର ଓ ଗୋମୂତ୍ର ମଧ୍ୟ ପବିତ୍ର ଏବଂ ତାହାର ଖୁରାଘାତରୁ ଉଡୁଥିବା ଧୂଳି (ଗୋଧୂଳି) ମଧ୍ୟ ପବିତ୍ର*। କିନ୍ତୁ ଗାଈଠାରେ ପରମାତ୍ମାଙ୍କୁ ପାଇବାର ଯୋଗ୍ୟତା ନାହିଁ, ଗୋରୁ ଜନ୍ମରେ ଏ ରୀତି ନାହିଁ। ଏହି ଯୋଗ୍ୟତା କେବଳ ମନୁଷ୍ୟର ଅଛି। ପରମାତ୍ମପ୍ରାପ୍ତି ପାଇଁ କୌଣସି ବି ମନୁଷ୍ୟ ଅନଧିକାରୀ ନୁହେଁ। ସମସ୍ତେ ଲକ୍ଷପତି ବା କୋଟିପତି ହୋଇ

* ଧେନୁଧୂରି ବେଲା ବିମଲ ସକଲ ସୁମଂଗଲ ମୂଲ। (ମାନସ, ବାଲ. ୩୧୨)

ପାରିବେ ନାହିଁ, କିନ୍ତୁ ସମସ୍ତେ ପରମାତ୍ମାଙ୍କୁ ପାଇ ପାରିବେ। କେହି ପୁରୁଷ ହୋଇଥାଉ ବା ସ୍ତ୍ରୀ ହୋଇଥାଉ, ବ୍ରାହ୍ମଣ ହୋଇଥାଉ ବା ଶୂଦ୍ର ହୋଇଥାଉ, ସାଧୁ ହୋଇଥାଉ ବା ଗୃହସ୍ଥ ହୋଇଥାଉ, ବଡ଼ ହୋଇଥାଉ ବା ଛୋଟ ହୋଇଥାଉ, ନୀରୋଗ ହୋଇଥାଉ ବା ରୋଗୀ ହୋଇଥାଉ, ବିଦ୍ୱାନ୍ ହୋଇଥାଉ ବା ମୂର୍ଖ ହୋଇଥାଉ, ଯିଏ ଯେପରି ହୋଇଥାଉ ନା କାହିଁକି, ତା'କୁଲରେ ପରମାତ୍ମାଙ୍କୁ ପାଇବାର ରୀତି ରହିଛି ଅର୍ଥାତ୍ ଏମାନେ ସମସ୍ତେ ପରମାତ୍ମାଙ୍କୁ ପାଇ ପାରିବେ। ଗୋଟିଏ ମାଆର ପୁଅମାନଙ୍କ ମଧ୍ୟରୁ କେହି ବଡ଼ ତ କେହି ଛୋଟ, କେହି ଶିକ୍ଷିତ ତ କେହି ଅଶିକ୍ଷିତ, କେହି ଧନୀ ତ କେହି ନିର୍ଦ୍ଧନ, କେହି ଯୋଗ୍ୟ ତ କେହି ଅଯୋଗ୍ୟ, କିନ୍ତୁ ମାଆକୁ ନିଜର କହିବାରେ ସମସ୍ତଙ୍କର ସମାନ ଅଧିକାର ଥାଏ। ସେହିପରି ଭଗବାନଙ୍କୁ ନିଜର କହିବାର ଅଧିକାର ସମସ୍ତଙ୍କର ସମାନ। ସମସ୍ତେ ଭଗବାନଙ୍କୁ କହି ପାରିବେ—

**ତ୍ୱମେବ ମାତା ଚ ପିତା ତ୍ୱମେବ ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ।**
**ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ ତ୍ୱମେବ ସର୍ବଂ ମମ ଦେବଦେବ॥**

ତେଣୁ ନିଜକୁ 'ମୁଁ ଯୋଗ୍ୟ ନୁହେଁ, ମୁଁ ଭକ୍ତ ନୁହେଁ, ମୁଁ ଜ୍ଞାନୀ ନୁହେଁ, ମୁଁ ଯୋଗୀ ନୁହେଁ, ମୁଁ ଅଧିକାରୀ ନୁହେଁ' ଏପରି ଭାବି କେବେହେଲେ ଧୈର୍ଯ୍ୟହରା ହେବା ଉଚିତ ନୁହେଁ, ବରଂ ଭଗବାନଙ୍କୁ କହିବା ଉଚିତ ଯେ, ମୁଁ କିଛି ନ ହେଲେ ବି ଆପଣଙ୍କର ତ ଅଂଶ। ମୁଁ ଯେ ଆପଣଙ୍କର ଏବଂ ଆପଣ ଯେ ମୋର—ଏଥିରେ ଦ୍ୱିମତ ନାହିଁ। ଏହିପରିଭାବରେ ନିଃସନ୍ଦେହ ହୋଇ ଦୃଢ଼ତାର ସହିତ ଭଗବାନଙ୍କ ଭଜନରେ ଲାଗିପଡ଼ିବା ବାଞ୍ଛନୀୟ।

ଆଜିକାଲି କେହି ଯଦି ସୈନ୍ୟବାହିନୀରେ ଭର୍ତ୍ତି ହେବାକୁ ଚାହିଁବ, ତାକୁ ଭଲଭାବରେ ପରୀକ୍ଷାନିରୀକ୍ଷା କରାଯିବ, ତା'ର ଯୋଗ୍ୟତା, ବୟସ, ସ୍ୱାସ୍ଥ୍ୟ ଇତ୍ୟାଦି ଦେଖାଯିବ। କିନ୍ତୁ ଭଗବାନ ଶ୍ରୀରାମଙ୍କ ସୈନ୍ୟବାହିନୀରେ ଭାଲୁ, ମାଙ୍କଡ଼ ପ୍ରଭୃତି ଭର୍ତ୍ତି ହୋଇଗଲେ! ଭଗବାନଙ୍କ ସୈନ୍ୟବାହିନୀରେ ଭର୍ତ୍ତି ହେବା ପାଇଁ କୌଣସି ସର୍ତ୍ତ ନାହିଁ ଯେ ଏପରି ଯୋଗ୍ୟତା ଓ ଅବସ୍ଥା ଥିବା ଦରକାର। ଭଗବାନଙ୍କ ଦରବାରରେ ଧ୍ରୁବ, ପ୍ରହ୍ଲାଦ ପ୍ରଭୃତି ଛୋଟ ଛୋଟ ପିଲା ମଧ୍ୟ ଭର୍ତ୍ତି ହୋଇଗଲେ, ଜଟାୟୁ ପ୍ରଭୃତି ପକ୍ଷୀ ମଧ୍ୟ ଭର୍ତ୍ତି ହୋଇଗଲେ, ପଥର ପାଲଟି ଯାଇଥିବା ଅହଲ୍ୟା ମଧ୍ୟ ଭର୍ତ୍ତି ହୋଇଗଲା, ନେତ୍ରହୀନ ସୂରଦାସ ମଧ୍ୟ ଭର୍ତ୍ତି ହୋଇଗଲେ! ସୂରଦାସଙ୍କୁ କିଛି ହେଲେ

ଦେଖାଯାଉ ନ ଥିଲା, ଅଥଚ ସେ ସୂର୍ଯ୍ୟଙ୍କ ପରି ହୋଇଗଲେ— ***'ସୂର ସୂର ତୁଲସୀ ଶଶୀ'!*** ଭଗବାନଙ୍କ ଦରବାର ସମସ୍ତଙ୍କ ପାଇଁ ସର୍ବଦା ଉନ୍ମୁକ୍ତ!

ଭଗବତ୍‌ପ୍ରାପ୍ତି ପାଇଁ ସବୁଠୁ ଉତ୍ତମ ଓ ସିଧାସରଳ କଥା ହେଲା—**'ସର୍ବଂ ବ୍ରହ୍ମାତ୍ମକମ୍', 'ବାସୁଦେବଃ ସର୍ବମ୍'** । ଏ ବିଷୟରେ ଆଗରୁ କୁହାଯାଇଛି ଯେ ଆମେ ବୁଝିପାରୁ ବା ନ ପାରୁ, ଆମକୁ ଦେଖାଯାଉ ବା ନ ଯାଉ, ତାହାକୁ ଖାତିରି ନ କରି କେବଳ ନିଃସନ୍ଦେହ ହୋଇ ଏତିକି ମାନିନେବାକୁ ପଡ଼ିବ ଯେ ସବୁକିଛି ଭଗବାନ । ଗୀତା, ରାମାୟଣ, ଭାଗବତ ଇତ୍ୟାଦି ଗ୍ରନ୍ଥ, ସନ୍ଥମହାତ୍ମା ସମସ୍ତେ ଏକସ୍ୱରରେ ଏହି କଥା କହନ୍ତି; କାରଣ ଏହା ହିଁ ବାସ୍ତବିକତା । 'ସବୁକିଛି ପରମାତ୍ମା'—ଏପରି ସ୍ୱୀକାର କରି ଉପରତ ହୋଇଯାଆନ୍ତୁ—**'ପରିପଶ୍ୟନ୍ନୁପରମେତ୍'** (ଶ୍ରୀମଦ୍‌ଭା. ୧୧ । ୨୯ । ୧୮) । **'ଉପରମେତ୍'** ପଦର ଅଭିପ୍ରାୟ ହେଉଛି 'ସବୁକିଛି ପରମାତ୍ମା' ଏହି ବୃତ୍ତିଠାରୁ ମଧ୍ୟ ଉପରତ ହୋଇଯାଆନ୍ତୁ, ଏହି ବୃତ୍ତିକୁ ମଧ୍ୟ ଛାଡ଼ି ଦିଅନ୍ତୁ । ବୃତ୍ତିକୁ ଛାଡ଼ିଦେଲେ ଏକମାତ୍ର ପରମାତ୍ମା ହିଁ ରହିଯାଆନ୍ତି । ତେଣିକି ଆଉ ସାଧକ ରହେ ନାହିଁ କି ସାଧନ ରହେ ନାହିଁ, ବରଂ ଏକମାତ୍ର ସାଧ୍ୟତତ୍ତ୍ୱ (ପରମାତ୍ମା) ଅବଶେଷ ରହିଯାଏ । କହିବାର ଅଭିପ୍ରାୟ ଏହି ଯେ ସାଧକ ସାଧନ କରି କରି ସାଧନରୂପ ହୋଇଯାଏ ଏବଂ ସାଧନରୂପ ହୋଇ ସାଧ୍ୟରେ ବିଲୀନ ହୋଇଯାଏ ।

ଯେପରି ମାଠିଆ ମାଟିରେ ତିଆରି ହୁଏ ଏବଂ ଶେଷକୁ ମାଟିରେ ହିଁ ମିଶିଯାଏ, ସେହିପରି ସମଗ୍ର ସଂସାର ପରମାତ୍ମାଙ୍କ ଠାରୁ ଉତ୍ପନ୍ନ ହୁଏ ଏବଂ ପରମାତ୍ମାଙ୍କ ଠାରେ ହିଁ ବିଲୀନ ହୋଇଯାଏ—**'ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା'** (ଗୀତା ୭ । ୬) । ଅତଏବ ସବୁକିଛି ପରମାତ୍ମା ହିଁ ଅଟନ୍ତି—

**ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।**
**ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ ॥**

(ଗୀତା ୭ । ୭)

''ହେ ଧନଞ୍ଜୟ! ମୋ'ଠାରୁ ବଳି ଏହି ଜଗତର ଅନ୍ୟ କୌଣସି କିଞ୍ଚିନ୍ମାତ୍ର କାରଣ ଓ କାର୍ଯ୍ୟ ନାହିଁ । ସୂତାରେ ତିଆରି ମାଳିଦାନାଗୁଡ଼ିକ ସୂତାରେ ଗୁନ୍ଥା ହୋଇଥିବା ପରି ଏହି ସମଗ୍ର ଜଗତ ମୋ'ଠାରେ ହିଁ ଓତପ୍ରୋତ ହୋଇଛି ।''

ଯୋଗବାସିଷ୍ଠରେ ମୟୂରୀ ଅଣ୍ଡାର ଉଦାହରଣ ଦିଆଯାଇଛି ଯେ, ଯେପରି ଗୋଟିଏ ଅଣ୍ଡାରୁ ଅନେକ ରଙ୍ଗବେରଙ୍ଗର ପର ବାହାରେ, ସେହିପରି ପରମାତ୍ମା ଅନେକ ରୂପରେ ଅଭିବ୍ୟକ୍ତ ହୋଇଯାଆନ୍ତି । ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା ଆଦି ସବୁକିଛି ମାଟିରୁ ହିଁ ସୃଷ୍ଟି ହୋଇଛନ୍ତି ଏବଂ

ନରନାରୀଙ୍କର ବିଭିନ୍ନ ରଙ୍ଗବେରଙ୍ଗର ବସ୍ତ୍ର ମଧ୍ୟ ମାଟିରୁ ତିଆରି ହୋଇଛି। ସେଥିପାଇଁ ସେସବୁରେ ନିଆଁ ଲଗାଇଦେଲେ ଶେଷରେ ମାଟି ହିଁ ଅବଶେଷ ରହିଯାଏ। ଠିକ୍ ସେହିପରି ଏକମାତ୍ର ପରମାତ୍ମା ହିଁ ଅନେକ ରୂପରେ ଅଭିବ୍ୟକ୍ତ ହୋଇଛନ୍ତି। କିନ୍ତୁ ଏହି କଥା ଭଗବାନଙ୍କ କୃପାରୁ ହିଁ ଜାଣିହୁଏ—

**ସୋଇ ଜାନଇ ଜେହି ଦେହୁ ଜନାଈ। ଜାନତ ତୁମ୍ହହି ତୁମ୍ହହି ହୋଇ ଜାଈ॥**
**ତୁମ୍ହରିହି କୃପା ତୁମ୍ହହି ରଘୁନଂଦନ। ଜାନହିଁ ଭଗତ ଭଗତ ଉର ଚଂଦନ॥**

(ମାନସ, ଅଯୋଧ୍ୟା. ୧୨୭।୨)

ଭଗବାନଙ୍କର ଆମ ଉପରେ କୃପା ରହିଛି, ସେଥିପାଇଁ ଆମକୁ ଏପରି କଥା ମିଳୁଛି! କୃପା ନ ଥିଲେ ଏଭଳି କଥା ମିଳି ନ ଥାନ୍ତା। ନିଜର ବଳ, ଧନ, ବିଦ୍ୟା, ଯୋଗ୍ୟତା ଓ ଉଦ୍ୟମ ଦ୍ୱାରା ଏପରି କଥା ପଢ଼ିବା ଓ ଶୁଣିବାକୁ ମିଳେ ନାହିଁ। ଭଗବାନଙ୍କ ଅହୈତୁକୀ କୃପାରୁ ହିଁ ଏହି କଥା ପଢ଼ିବାକୁ ଓ ଶୁଣିବାକୁ ମିଳିଥାଏ।

ଭଗବାନ କହିଛନ୍ତି—

**ମନସା ବଚସା ଦୃଷ୍ଟ୍ୟା ଗୃହ୍ୟତେଽନ୍ୟୈରପୀନ୍ଦ୍ରିୟୈଃ।**
**ଅହମେବ ନ ମତ୍ତୋଽନ୍ୟଦିତି ବୁଧ୍ୟଧ୍ୱମଞ୍ଜସା॥**

(ଶ୍ରୀମଦ୍ଭା. ୧୧।୧୩।୨୪)

''ମନ, ବାଣୀ ଓ ଦୃଷ୍ଟି ଦ୍ୱାରା ତଥା ଅନ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା କିଛି ଗ୍ରହଣ କରାଯାଏ, ସେସବୁ ମୁଁ ହିଁ ଅଟେ। ଏଣୁ ମୋ ବ୍ୟତୀତ ଆଉ କିଛି ନାହିଁ—ଏ ସିଦ୍ଧାନ୍ତକୁ ଆପଣମାନେ ବିଗ୍ରହପୂର୍ବକ ଶୀଘ୍ର ବୁଝି ନିଅନ୍ତୁ ଓ ସ୍ୱୀକାର କରନ୍ତୁ।'' କହିବାର ଉଦ୍ଦେଶ୍ୟ ଯେ ଯାହା ବି ଚିନ୍ତନ କରୁଛନ୍ତି, ତାହା ମୋର ହିଁ ଚିନ୍ତନ। ଯାହା କିଛି ଗ୍ରହଣ କରୁଛନ୍ତି, ମୋତେ ହିଁ ଗ୍ରହଣ କରୁଛନ୍ତି। ଯାହା କିଛି ଦେଖୁଛନ୍ତି, ମୋତେ ହିଁ ଦେଖୁଛନ୍ତି। ଯାହା କିଛି ଶୁଣୁଛନ୍ତି, ମୋତେ ହିଁ ଶୁଣୁଛନ୍ତି। ଯାହା କିଛି ସ୍ପର୍ଶ କରୁଛନ୍ତି, ମୋତେ ହିଁ ସ୍ପର୍ଶ କରୁଛନ୍ତି ଏବଂ ଯାହା କିଛି ଆଘ୍ରାଣ କରୁଛନ୍ତି, ମୋତେ ହିଁ ଆଘ୍ରାଣ କରୁଛନ୍ତି। ମୋଟ ଉପରେ କହିଲେ ସମସ୍ତ ଇନ୍ଦ୍ରିୟ, ମନ ଓ ବୁଦ୍ଧିର ବିଷୟ ହେଉଛି ମୁଁ। ମୋ ବ୍ୟତୀତ ଆଉ କିଛି ନାହିଁ। ଏହାଠାରୁ ବଳି ଉତ୍ତମ ସିଦ୍ଧାନ୍ତ ଆଉ କିଛି ନାହିଁ। ଶେଷକୁ ଏହିଠାରେ ହିଁ ପହଞ୍ଚିବାକୁ ହେବ। ତେଣୁ ଏ କଥାକୁ ଏହିକ୍ଷଣି ସ୍ୱୀକାର କରି ନିଅନ୍ତୁ।



# ୫. ଗୀତାର ବିଚିତ୍ର ରହସ୍ୟ

ଭଗବାନଙ୍କ ଦ୍ୱାରା କଥିତ ଗୀତା ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ । ଗୀତା ଉପରେ ଯେତେ ଅଧିକ ବିଗ୍ଭର କରାଯାଏ, ସେଥିରୁ ସେତେ ଅଧିକ ବିଚିତ୍ର ବିଚିତ୍ର କଥା ମିଳେ । ମନୁଷ୍ୟକୁ ସମଗ୍ର ସଂସାରର ଆଧିପତ୍ୟ, ଇନ୍ଦ୍ରପଦ ଓ କୁବେରର ଧନଭଣ୍ଡାର ମିଳିଗଲେ ମଧ୍ୟ ତା'ର ଦୁଃଖ ଦୂର ହୋଇ ପାରିବ ନାହିଁ । କିନ୍ତୁ ଗୀତାର ଉପଦେଶକୁ ମାନିନେଲେ ତା'ର ଦୁଃଖ ରହିବ ନାହିଁ, ସବୁଦିନ ପାଇଁ ଦୁଃଖ ଦୂର ହୋଇଯିବ । ତାହାର ସନ୍ତାପ, ଜ୍ୱଳନ, ଉଦ୍‌ବେଗ, ଅଶାନ୍ତି, ଚିନ୍ତା, ଶୋକ, ଭୟ ଇତ୍ୟାଦି ସମସ୍ତ ଜଞ୍ଜାଳ ତୁଟିଯିବ ଏବଂ ସେ ସବୁଦିନ ପାଇଁ କୃତକୃତ୍ୟ, ଜ୍ଞାତଜ୍ଞାତବ୍ୟ ଓ ପ୍ରାପ୍ତପ୍ରାପ୍ତବ୍ୟ ହୋଇଯିବ ଅର୍ଥାତ୍ ତା' ପାଇଁ କିଛି କରିବା, ଜାଣିବା ଓ ପାଇବା ବାକି ରହିବ ନାହିଁ; କାରଣ ଏହା ହିଁ ବାସ୍ତବିକତା । ଗୀତାର ମହିମା ଏତେ ଅଲୌକିକ ଯେ ତାହାକୁ କେହି ବର୍ଣ୍ଣନା କରିପାରିବ ନାହିଁ । କାରଣ ବର୍ଣ୍ଣନା କରୁଥିବା ବାଣୀ ସୀମିତ, ଚିନ୍ତନ କରୁଥିବା ମନ ସୀମିତ, ନିର୍ଣ୍ଣୟ କରୁଥିବା ବୁଦ୍ଧି ସୀମିତ । କିନ୍ତୁ ଭଗବାନଙ୍କର ବାଣୀ ଅସୀମ । ପ୍ରକୃତିଜନିତ ସମସ୍ତ ପଦାର୍ଥ ସୀମିତ । ପ୍ରକୃତିରୁ ଅତୀତ ତତ୍ତ୍ୱର ବର୍ଣ୍ଣନା ପ୍ରକୃତିର ଅଂଶ ବୁଦ୍ଧି ମଧ୍ୟ କରିପାରେ ନାହିଁ, ପୁଣି ମନୁଷ୍ୟ କ'ଣ ବା ବର୍ଣ୍ଣନା କରିବ! ବୁଦ୍ଧି ପ୍ରକୃତିକୁ ମଧ୍ୟ ପୂର୍ଣ୍ଣରୂପେ ଜାଣିପାରେ ନାହିଁ, ପୁଣି ପ୍ରକୃତିରୁ ଅତୀତ ତତ୍ତ୍ୱକୁ କିପରି ବା ଜାଣିବ? ମାଟିରୁ ତିଆରି ମାଠିଆ ସମଗ୍ର ମାଟିକୁ ନିଜ ଭିତରେ ସମାହିତ କରିପାରେ ନାହିଁ, ପୁଣି ଆକାଶକୁ କେମିତି ସମାହିତ କରିବ?

ଗୀତା ସ୍ପଷ୍ଟରୂପେ ଘୋଷଣା କରେ—**'ବାସୁଦେବଃ ସର୍ବମ୍'** (୭ । ୧୯) 'ସବୁକିଛି ବାସୁଦେବ' । ଏ କଥାକୁ କେବଳ ସ୍ୱୀକାର କରିନେଲେ ହେଲା । ଏହା ଦେଖିବା, ବୁଝିବା ଓ ଅନୁଭବ ଦ୍ୱାରା ପ୍ରତ୍ୟକ୍ଷୀଭୂତ ନ ହେଲେ ମଧ୍ୟ ଗୀତାରେ କଥିତ ଭଗବାନଙ୍କ ବଚନକୁ ଶ୍ରଦ୍ଧା ଓ ବିଶ୍ୱାସପୂର୍ବକ ଦୃଢ଼ତାର ସହିତ ସ୍ୱୀକାର କରିନେବା ଉଚିତ । ତେଣିକି ଭଗବାନଙ୍କ କୃପାରୁ ଆପେ ଆପେ ବୁଝି ହୋଇଯିବ; କାରଣ ପ୍ରକୃତରେ ଏହା ହିଁ ବାସ୍ତବିକତା । ବାସ୍ତବିକତାକୁ ମାନିନେଲେ ତାହା ଧୀରେ ଧୀରେ ହୃଦୟରେ ଦୃଢ଼ ହୋଇଯାଏ ଏବଂ ଭଗବାନଙ୍କ କୃପାରୁ ସ୍ପଷ୍ଟରୂପେ ଅନୁଭବ ହେବାକୁ ଲାଗେ । ସବୁକିଛି ଭଗବାନ—ଏହା ସବୁଠୁ ଉଚ୍ଚସ୍ତରର କଥା ଏବଂ ଏହାକୁ ଅତି ସହଜରେ ଧାରଣ କରାଯାଇ ପାରେ । ବର୍ତ୍ତମାନ ଏହାର ଉପାୟ କୁହାଯାଉଛି ।

## (୧)

ଭଗବାନ କହିଛନ୍ତି—

**ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।**

(ଗୀତା ୨ । ୧୬)

''ଅସତ୍‌ର ସତ୍ତା ବିଦ୍ୟମାନ ନାହିଁ ଏବଂ ସତ୍‌ର ଅଭାବ ବିଦ୍ୟମାନ ନାହିଁ ।''

—ଏହି ଷୋହଳଟି ଅକ୍ଷରରେ ସମସ୍ତ ବେଦ, ପୁରାଣ ଓ ଶାସ୍ତ୍ରର ନିର୍ଯାସ ପୂରି ରହିଛି! ଅସତ୍ ଓ ସତ୍—ଏ ଦୁଇଟିକୁ ହିଁ ପ୍ରକୃତି ଓ ପୁରୁଷ, କ୍ଷର ଓ ଅକ୍ଷର, ଶରୀର ଓ ଶରୀରୀ, ଅନିତ୍ୟ ଓ ନିତ୍ୟ, ନାଶବାନ୍ ଓ ଅବିନାଶୀ ଆଦି ନାମରେ ନାମିତ କରାଯାଇଛି । ଦେଖିବା, ଶୁଣିବା, ଭାବିବା ଓ ନିର୍ଣ୍ଣୟ କରିବା ମଧ୍ୟରେ ଯାହା କିଛି ଅନ୍ତର୍ଗତ ହୋଇପାରେ, ସେସବୁ 'ଅସତ୍' । ଯାହାଦ୍ୱାରା ଦେଖି ହୁଏ, ଶୁଣି ହୁଏ ଓ ଭାବି ହୁଏ, ତାହା ମଧ୍ୟ ଅସତ୍ ଏବଂ ଦୃଶ୍ୟ ମଧ୍ୟ ଅସତ୍ । ଅସତ୍‌ର ସତ୍ତା ନାହିଁ ଏବଂ ସତ୍‌ର ଅଭାବ ନାହିଁ—ଏହାର ତାତ୍ପର୍ଯ୍ୟ ହେଲା, ଏକମାତ୍ର ସତ୍-ତତ୍ତ୍ୱ (ପରମାତ୍ମାଙ୍କ) ବ୍ୟତୀତ ଆଉ କିଛି ନାହିଁ ।

ଏହା ସମସ୍ତଙ୍କର ପ୍ରତ୍ୟକ୍ଷ ଅନୁଭବ ଯେ ଶରୀର ଓ ସଂସାର କ୍ଷଣେମାତ୍ର ସ୍ଥିର ହୋଇ ରହେ ନାହିଁ, ବରଂ ପ୍ରତିକ୍ଷଣ ନଷ୍ଟ ହେଉଥାଏ । ଉଦାହରଣାର୍ଥ—ପୂର୍ବରୁ ଆମେ ବାଳକ ଥିଲୁ । ଆମେ ବାଲ୍ୟାବସ୍ଥାକୁ କଦାପି ଛାଡ଼ି ନାହୁଁ, କିନ୍ତୁ ତାହା ଗ୍ୱଲିଗଲା । ସେହିପରି ଯୁବାବସ୍ଥା ମଧ୍ୟ ଛାଡ଼ି ଗ୍ୱଲିଯାଉଛି, ବୃଦ୍ଧାବସ୍ଥା ମଧ୍ୟ ଛାଡ଼ି ଗ୍ୱଲିଯାଉଛି ଏବଂ ଏ ଶରୀର ମଧ୍ୟ ଛାଡ଼ି ଗ୍ୱଲିଯାଉଛି । ସମଗ୍ର ସଂସାର, ତିନି ଲୋକ, ଚଉଦ ଭୁବନ, ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡ ନିରନ୍ତର ଅଭାବ ଆଡ଼କୁ ଗତି କରୁଛି—'ନାସତୋ ବିଦ୍ୟତେ ଭାବଃ' । କିନ୍ତୁ ପରମାତ୍ମା ଓ ତାଙ୍କ ଅଂଶ ଜୀବାତ୍ମାର କଦାପି ଅଭାବ ହୁଏ ନାହିଁ—**'ନାଭାବୋ ବିଦ୍ୟତେ ସତଃ'** । ମୁଁ ମୋ ଜୀବନକାଳ ମଧ୍ୟରେ ଅନେକ କଥା ଶୁଣିଛି, ଅନେକ ଶାସ୍ତ୍ର ପଢ଼ିଛି, କିନ୍ତୁ କେଉଁଠି ଏପରି ଶୁଣିବାକୁ ବା ପଢ଼ିବାକୁ ପାଇ ନାହିଁ ଯେ ପରମାତ୍ମା ବଦଳିଗଲେଣି, ପୂର୍ବର ପରମାତ୍ମା ଏବେ ନାହାନ୍ତି! ପରମାତ୍ମା 'ଅଛନ୍ତି' ଏବଂ ସଂସାର 'ନାହିଁ'—ଏ ଦୁଇଟିର ଗୋଟିଏ ମାତ୍ର ଅନ୍ତ(ତତ୍ତ୍ୱ)କୁ ତତ୍ତ୍ୱଦର୍ଶୀ ତଥା ଅନୁଭବୀ ମହାପୁରୁଷମାନେ ଅନୁଭବ କରିଛନ୍ତି ଅର୍ଥାତ୍ ଏ ଦୁଇଟିର ନିଷ୍କର୍ଷ ହେଲା, ଏକମାତ୍ର ପରମାତ୍ମତତ୍ତ୍ୱ ହିଁ ବିଦ୍ୟମାନ—**'ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ'** (ଗୀତା ୨ । ୧୬) । କହିବାର ଉଦ୍ଦେଶ୍ୟ ଯେ

ସତ୍ (ଅପରିବର୍ତ୍ତନଶୀଳ) ଓ ଅସତ୍ (ପରିବର୍ତ୍ତନଶୀଳ)—ଉଭୟେ ଭିନ୍ନ ଭିନ୍ନ । ସତ୍ କଦାପି ଅସତ୍ ହୋଇ ପାରିବ ନାହିଁ ଏବଂ ଅସତ୍ କଦାପି ସତ୍ ହୋଇ ପାରିବ ନାହିଁ; କିନ୍ତୁ ତତ୍ତ୍ୱଦୃଷ୍ଟିରୁ ଉଭୟେ ସମାନ । ଗୀତାରେ ଅଛି—

**ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି ।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ॥**

(୫ । ୧୮)

ଅଭିପ୍ରାୟ ଏହି ଯେ ବ୍ରାହ୍ମଣ ଓ ଚଣ୍ଡାଳ, ଗାଈ ଓ କୁକୁର, ହାତୀ ଓ ପିମ୍ପୁଡ଼ି—ପ୍ରତ୍ୟେକ ଭିନ୍ନ ଭିନ୍ନ ହୋଇଥିଲେ ମଧ୍ୟ ଜ୍ଞାନୀ ମହାପୁରୁଷ ସେମାନଙ୍କ ମଧ୍ୟରେ ଏକମାତ୍ର ସମରୂପ ପରମାତ୍ମାଙ୍କୁ ହିଁ ଦେଖନ୍ତି । ସେହିପରି ସତ୍ ଓ ଅସତ୍ ଅଲଗା ଅଲଗା ହୋଇଥିଲେ ମଧ୍ୟ ଭକ୍ତ ସେଥିମଧ୍ୟରେ ଏକମାତ୍ର ଭଗବାନଙ୍କୁ ହିଁ ଦେଖେ—**'ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍'** (ଗୀତା ୧୧ । ୩୭) । ଦିନ ଓ ରାତି ଗୋଟିଏ ଅନ୍ୟଟିର ସାପେକ୍ଷ, ଦିନ ତୁଳନାରେ ରାତି କୁହାଯାଏ ଏବଂ ରାତି ତୁଳନାରେ ଦିନ କୁହାଯାଏ, କିନ୍ତୁ ସୂର୍ଯ୍ୟଙ୍କ ଠାରେ ଦିନ ନ ଥାଏ କି ରାତି ନ ଥାଏ ଅର୍ଥାତ୍ ସେ ହେଉଛନ୍ତି ନିରପେକ୍ଷ । ସେହିପରି ସତ୍ ଓ ଅସତ୍ ଉଭୟ ସାପେକ୍ଷ, ମାତ୍ର ପରମାତ୍ମତତ୍ତ୍ୱ ନିରପେକ୍ଷ । ସେଥିପାଇଁ ସମଦର୍ଶୀ ମହାପୁରୁଷ ସତ୍ ଓ ଅସତ୍ ଉଭୟର ଏକମାତ୍ର ଅନ୍ତକୁ ଅର୍ଥାତ୍ ସତ୍-ତତ୍ତ୍ୱ (ପରମାତ୍ମତତ୍ତ୍ୱ)କୁ ଅନୁଭବ କରନ୍ତି ।

ଯାହା ବିଦ୍ୟମାନ, ତାହା ସ୍ୱାଭାବିକଭାବେ ସର୍ବଦା ବିଦ୍ୟମାନ ଏବଂ ଯାହା ଅବିଦ୍ୟମାନ, ତାହା କଦାପି ବିଦ୍ୟମାନ ନୁହେଁ—

**ହୈ ସୋ ସୁନ୍ଦର ହୈ ସଦା, ନହିଁ ସୋ ସୁନ୍ଦର ନାହିଁ ।**
**ନହିଁ ସୋ ପରଗଟ ଦେଖିୟେ, ହୈ ସୋ ଦୀଖେ ନାହିଁ ॥**

ଯାହା ନଷ୍ଟ ହେଉଛି, ତାହା ହେଲା ସଂସାର ଏବଂ ଯେ ସର୍ବଦା ଯଥାବତ୍ ରହୁଛନ୍ତି, ସେ ହେଲେ ପରମାତ୍ମା । ଗଙ୍ଗାର ପ୍ରବାହ ନିରନ୍ତର ସମୁଦ୍ର ଅଭିମୁଖେ ଗତି କରୁଥାଏ । ରାତିରେ ଲୁଚି ଲୁଚି ଦେଖିଲେ ମଧ୍ୟ ତାହା ବହି ଚାଲୁଥାଏ । ଗଙ୍ଗାକୁ କେହି ଦେଖୁ ବା ନ ଦେଖୁ, ଜାଣୁ ବା ନ ଜାଣୁ, ମାନୁ ବା ନ ମାନୁ, ତାହା କେବେହେଲେ ଅଟକିଯାଏ ନାହିଁ । ତାହାର ପ୍ରବାହ ନିରନ୍ତର ସ୍ୱାଭାବିକରୂପେ ପ୍ରବାହିତ ହୋଇଚାଲିଥାଏ । ସେହିପରି ସମଗ୍ର ସଂସାର ନିରନ୍ତର ପ୍ରବାହିତ ହେଉଛି ଏବଂ ପ୍ରବାହିତ ହୋଇ ଅଭାବ (ବିନାଶ) ଅଭିମୁଖେ ଗତି କରୁଛି । ପ୍ରବହମାନ ସଂସାରରେ ଏକମାତ୍ର ସ୍ଥିର

ପରମାତ୍ମା ହିଁ 'ବିଦ୍ୟମାନ'ରୂପରେ ଦେଖାଯାଉଛନ୍ତି । 'ସଂସାର ବିଦ୍ୟମାନ'— ଏଥିରେ 'ସଂସାର' ନଷ୍ଟ ହେଉଛି, କେବଳ 'ବିଦ୍ୟମାନ' ହିଁ ରହୁଛି ।

**ଜାସୁ ସତ୍ୟତା ତେଁ ଜଡ଼ ମାୟା । ଭାସ ସତ୍ୟ ଇବ ମୋହ ସହାୟା ॥**

(ମାନସ, ବାଲ. ୧୧୭ । ୪)

ଏ ଯେଉଁ ସଂସାର ଦେଖାଯାଉଛି, ତାହାର ନିଜର ସ୍ୱତନ୍ତ୍ର ସତ୍ତା ନାହିଁ। ତାହା ପରମାତ୍ମାଙ୍କର ଗୋଟିଏ ଆଭା, ଝଲକ ବା ପ୍ରକାଶ । ଏଣୁ 'ଆଭା' ଉପରେ ଦୃଷ୍ଟି ନ ରଖି ପରମାତ୍ମାଙ୍କ ଆଡ଼କୁ ଦୃଷ୍ଟି ରଖିବା ଉଚିତ, 'ଅବିଦ୍ୟମାନ'କୁ ନ ଦେଖି 'ବିଦ୍ୟମାନ'କୁ ଦେଖିବା ଉଚିତ । ଏହାକୁ ଗୀତାରେ **'ବାସୁଦେବଃ ସର୍ବମ୍'** କୁହାଯାଇଛି । ଅଭିପ୍ରାୟ ହେଲା, ସେହି ସତ୍ ହିଁ ଅସତ୍‌ରୂପରେ ଦେଖାଯାଉଛି—**'ସଦସଚ୍ଚାହମର୍ଜୁନ'** (ଗୀତା ୯ । ୧୯)। ପରମାତ୍ମତତ୍ତ୍ୱ ହିଁ ସଂସାରରୂପରେ ଦେଖାଯାଉଛି । ଉଦାହରଣସ୍ୱରୂପ—ଗହମ ଓ ବାଜରାର ଅଟା ଯେତେ ମିଠା ଲାଗେ, ବେସନ ତା' ତୁଳନାରେ ବହୁତ ଫିକା ବା ସ୍ୱାଦହୀନ ଜଣାପଡ଼େ । ବେସନରେ ବୁନ୍ଦିଆ ତିଆରି କରି ତାହାକୁ ଚିନି ସିରାରେ ପକାଇଲେ ବୁନ୍ଦିଆ ମିଠା ହୋଇଯାଏ ଏବଂ ଖାଇବାକୁ ବହୁତ ଭଲ ଲାଗେ । ସେହି ବୁନ୍ଦିଆରୁ ଆଠ ଦଶଟି ଦାନା ପାଟିରେ ପକାଇ କିଛି ସମୟ ଚୁଚୁମିବା ପରେ ତାହା ଏକବାରେ ଫିକା ଲାଗେ; କାରଣ ତାହା ପୂର୍ବରୁ ହିଁ ଫିକା ଥିଲା । ସେଥିରେ ଯେଉଁ ମିଠା ଅନୁଭୂତ ହେଉଥିଲା, ତାହା ବୁନ୍ଦିଆର ମିଠା ନ ଥିଲା, ତାହା ଥିଲା ଚିନିର । ସେହିପରି ସଂସାର ହେଉଛି ଫିକା, ଅର୍ଥାତ୍ ସଂସାରର ଯେଉଁ 'ବିଦ୍ୟମାନତା' ଦେଖାଯାଉଛି, ତାହା ସଂସାରର ନୁହେଁ, ବରଂ ପରମାତ୍ମାଙ୍କର । ପ୍ରକୃତରେ ଦେଖିବାକୁ ଗଲେ ଏହି ଦୃଷ୍ଟାନ୍ତଟି ପୂର୍ଣ୍ଣରୂପେ ମେଳଖାଉ ନାହିଁ । କାରଣ ବୁନ୍ଦିଆକୁ ଚୁଚୁମିଲେ ଶେଷକୁ କେବଳ ଫିକା ବେସନ ରହିଯାଏ, ବୁନ୍ଦିଆରୁ ସବୁ ମିଠା ଚାଲିଯାଏ । କିନ୍ତୁ ପରମାତ୍ମତତ୍ତ୍ୱର ଅନୁଭବ ହୋଇଯିବା ପରେ ସଂସାର ସଂସାରରୂପରେ ରହେ ନାହିଁ, ସଂସାରର କିଛି ଅଂଶ ବି ଅବଶେଷ ରହେ ନାହିଁ, କେବଳ ପରମାତ୍ମା ହିଁ ଅବଶେଷ ରହନ୍ତି—**'ଶିଷ୍ୟତେ ଶେଷସଂଜ୍ଞଃ'** ।*

---

* ଗୀତାରେ ଅଛି—'ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ । ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା ॥' (୪ । ୩୭) । ଏଠାରେ ମଧ୍ୟ ଏହିଭଳି ବୁଝିବା ଉଚିତ ଯେ ନିଆଁରେ କାଠ ଜଳିଗଲା ପରେ ପାଉଁଶ ଅବଶେଷ ରହିଯାଏ, କିନ୍ତୁ ଜ୍ଞାନରୂପୀ ଅଗ୍ନି ଦ୍ୱାରା କର୍ମ ଭସ୍ମ ହୋଇଗଲେ କର୍ମ ଓ କର୍ମଫଳ (କୌଣସି ପଦାର୍ଥ) କିଛି ହେଲେ ରହେ ନାହିଁ, କେବଳ ପରମାତ୍ମା ଅବଶେଷ ରହିଯାଆନ୍ତି ।

## (୨)

ସଂସାରରେ ଦୁଇଟି ଜିନିଷ ଦେଖିବାକୁ ମିଳେ—ପଦାର୍ଥ ଓ କ୍ରିୟା। ସମସ୍ତ ପଦାର୍ଥ ଓ କ୍ରିୟା ଭଗବାନଙ୍କର ଓ ତାହା ଭଗବାନଙ୍କର ହିଁ ସ୍ୱରୂପ। ସେଥିପାଇଁ ଭଗବାନ କହିଛନ୍ତି ଯେ ଯେତେ ବି ପଦାର୍ଥ ଓ କ୍ରିୟା ରହିଛି, ସେଗୁଡ଼ିକୁ ନିଜର ମନେ ନ କରି ମୋତେ ଅର୍ପଣ କରିଦିଅ—

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି।**
**ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରଯତାତ୍ମନଃ॥**

(ଗୀତା ୯ । ୨୬)

"ଯେଉଁ ଭକ୍ତ ପତ୍ର, ପୁଷ୍ପ, ଫଳ, ଜଳ ଆଦି (ଯଥାସାଧ୍ୟ ପ୍ରାପ୍ତ ଦ୍ରବ୍ୟ)କୁ ଭକ୍ତିର ସହିତ ମୋତେ ଅର୍ପଣ କରେ, ମୋ'ଠାରେ ତଲ୍ଲୀନ ଅନ୍ତଃକରଣଯୁକ୍ତ ସେହି ଭକ୍ତ ଦ୍ୱାରା ଭକ୍ତିପୂର୍ବକ ଅର୍ପିତ ଉପହାରକୁ ମୁଁ ଖାଇଦିଏ ଅର୍ଥାତ୍ ନିଜ ସହିତ ମିଶାଇଦିଏ—ଏକାକାର କରିଦିଏ।"

**ଯତ୍କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍।**
**ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣମ୍॥**

(ଗୀତା ୯ । ୨୭)

"ହେ କୁନ୍ତୀପୁତ୍ର! ତୁମେ ଯାହା କିଛି କରୁଛ, ଯାହା କିଛି ଖାଉଛ, ଯାହା କିଛି ଯଜ୍ଞ କରୁଛ, ଯାହା କିଛି ଦାନ ଦେଉଛ ଏବଂ ଯାହା କିଛି ତପ କରୁଛ, ସେସବୁ ମୋତେ ଅର୍ପଣ କରିଦିଅ।"

ଧନସମ୍ପତ୍ତି, ଘରଦ୍ୱାର, ଲୁଗାପଟା, ନିଜର ଶରୀର, ବାପା, ମାଆ, ସ୍ତ୍ରୀ, ପୁତ୍ର, ଭାଇ, ଭଉଣୀ ପ୍ରଭୃତି ସମସ୍ତଙ୍କୁ ଭଗବାନଙ୍କ ନିକଟରେ ଅର୍ପଣ କରିଦିଅନ୍ତୁ। ଅର୍ପଣ କରିବାର ଅର୍ଥ ହେଲା—ସେମାନଙ୍କୁ ନିଜର ମନେ ନ କରନ୍ତୁ। ଅର୍ପଣ କରିଦେଲେ କୌଣସି ଜିନିଷ ଲେଶମାତ୍ର ଊଣା ହୋଇଯିବ ନାହିଁ, କିନ୍ତୁ ଅର୍ପଣ କରୁଥିବା ବ୍ୟକ୍ତି କୃତାର୍ଥ ହୋଇଯିବ। କାରଣ ଅର୍ପିତ ବସ୍ତୁ ବାସ୍ତବରେ ଭଗବାନଙ୍କର ଓ ଭଗବାନଙ୍କ ସ୍ୱରୂପ ହିଁ ଥିଲା। ସେଗୁଡ଼ିକୁ ନିଜର ମନେକରି ଅର୍ପଣ କରୁଥିବା ଲୋକ ଭୁଲ୍ କରିଥିଲା। ଏଣୁ ଅର୍ପଣ କରିଦେଲେ ଅର୍ପଣ କରୁଥିବା ଲୋକର ଭୁଲ୍, ଅଜ୍ଞତା ଓ ଜଞ୍ଜାଳ ସମାପ୍ତ ହୋଇଯାଏ। ଆହୁତି ଯେପରି ଅଗ୍ନିରେ ମିଶି ଅଗ୍ନିରୂପ ହୋଇଯାଏ, ସେହିପରି ଅର୍ପିତ ବସ୍ତୁ ଭଗବାନଙ୍କ ସହିତ ମିଶି ଭଗବତ୍‌ସ୍ୱରୂପ ହୋଇଯାଏ। ଅର୍ପଣ କରିଦେଲେ ଯେ ଅର୍ପିତ ବସ୍ତୁ ପାଇ ଭଗବାନଙ୍କର ଦାରିଦ୍ର୍ୟ ଦୂର ହୋଇଯିବ, ତାଙ୍କର ସମ୍ପତ୍ତି ବଢ଼ିଯିବ,

ସେ କଥା ନୁହେଁ। ଭଗବାନ ଏଠାରେ ଆତ୍ମନେପଦ **'କୁରୁଷ୍ୱ'** ପ୍ରୟୋଗ କରିଛନ୍ତି—**'ତତ୍ କୁରୁଷ୍ୱ ମଦର୍ପଣମ୍'**। ଏହାର ଉଦ୍ଦେଶ୍ୟ ହେଲା, ଆମେ ଅର୍ପଣ କରି ଭଗବାନଙ୍କର ଅଭାବ ପୂରଣ କରୁ ନାହୁଁ, ବରଂ ନିଜର ଅଭାବ ଓ ଜଞ୍ଜାଳକୁ ହିଁ ଦୂର କରୁଛୁ ଅର୍ଥାତ୍ ଅର୍ପଣ କରିବାର ଫଳ ଆମକୁ ହିଁ ମିଳିବ, ଆମର ହିଁ କଲ୍ୟାଣ ହେବ। ଯଦି ଠିକ୍‌ଭାବରେ ଅର୍ପଣ କରାଯାଏ, ତେବେ ଅର୍ପକ, ଅର୍ପଣ, ଅର୍ପିତ ବସ୍ତୁ ଓ ଅର୍ପ୍ୟ ଚାରିହେଁ ଏକ ହୋଇଯିବେ ଅର୍ଥାତ୍ ଭଗବତ୍‌ସ୍ୱରୂପ ହୋଇଯିବେ। କାରଣ ଅର୍ପକ (ଅର୍ପଣ କରୁଥିବା ଲୋକ), ଅର୍ପଣରୂପୀ କ୍ରିୟା, ଅର୍ପିତ ବସ୍ତୁ ଓ ଅର୍ପ୍ୟ (ଭଗବାନ)—ଚାରିହେଁ ତତ୍ତ୍ୱତଃ ଏକ ପରମାତ୍ମା ହିଁ ଅଟନ୍ତି—**'ବାସୁଦେବଃ ସର୍ବମ୍'**।

ଠାକୁରଙ୍କ ପାଖରେ ମିଠେଇ ଭୋଗ ଲଗାଇ ସେହି ପ୍ରସାଦକୁ ବାଣ୍ଟିଲେ ଲକ୍ଷପତି ଓ କୋଟିପତି ମଧ୍ୟ ପ୍ରସାଦ ପାଇଁ ହାତ ପତାନ୍ତି ଏବଂ କଣିକାଏ ମିଳିଗଲେ ଖୁସୀ ହୋଇଯାଆନ୍ତି। ସେମାନେ କଣ ମିଠେଇ ଖାଇବାକୁ ଲାଳାୟିତ? ଯଦି କାହାକୁ ଆମେ କହିବା ଯେ ଏମାନେ ମିଠେଇ ମାଗୁଛନ୍ତି, ଏମାନଙ୍କୁ ଦଶ ଟଙ୍କାର ମିଠେଇ ଆଣିଦିଅ, ତେବେ ସେମାନେ ଖରାପ ଭାବିବେ। କାରଣ ସେମାନେ ମିଠେଇ ପାଇଁ ଲାଳାୟିତ ନୁହନ୍ତି, ପ୍ରସାଦ ପାଇଁ ଲାଳାୟିତ। ଠାକୁରଙ୍କୁ ଅର୍ପଣ କରିବାପରେ ସେହି ଜିନିଷ ପ୍ରସାଦ ହୋଇଗଲା, ତାହା ଅତୀବ ପବିତ୍ର ଅର୍ଥାତ୍ ଭଗବତ୍‌ସ୍ୱରୂପ ହୋଇଗଲା! ସେହିପରି ଆମେ ଭଗବାନଙ୍କ ନିକଟରେ ସବୁକିଛି ଅର୍ପଣ କରିଦେଲେ ସେସବୁ ପ୍ରସାଦ ହୋଇଯିବ। ଆମେ ଯାହା ଖାଉଛେ, ଯାହା ପିନ୍ଧୁଛେ ତଥା ମାଆ ଭଉଣୀମାନେ ଯାହା କିଛି ବସ୍ତ୍ର-ଅଳଂକାର ପିନ୍ଧୁଛନ୍ତି—ସବୁକିଛି ଠାକୁରଙ୍କ ପ୍ରସାଦ ଅର୍ଥାତ୍ ଭଗବତ୍‌ସ୍ୱରୂପ ହୋଇଯିବ!

**ତୁମ୍ହହି ନିବେଦିତ ଭୋଜନ କରହୀଁ। ପ୍ରଭୁ ପ୍ରସାଦ ପଟ ଭୂଷନ ଧରହୀଁ॥**

(ମାନସ, ଅଯୋଧ୍ୟା. ୧୨୯।୧)

ଭଗବାନଙ୍କୁ ଅର୍ପଣ କରିବାର ଅର୍ଥ—ଆପଣାର ଭାବ ଦୂର କରିବା। ବସ୍ତୁଗୁଡ଼ିକୁ ନିଜର ମାନିଲେ ସେଗୁଡ଼ିକ ଅପବିତ୍ର ହୋଇଯାଏ ଏବଂ ଆପଣାର ଭାବ ସମ୍ପୂର୍ଣ୍ଣ ଛାଡ଼ିଦେଲେ ସେଗୁଡ଼ିକ ଅତ୍ୟନ୍ତ ପବିତ୍ର ଅର୍ଥାତ୍ ଭଗବତ୍‌ସ୍ୱରୂପ ହୋଇଯାଏ। ଆସ୍ତିକ ଗୃହସ୍ଥ ଲୋକଙ୍କ ଘରେ ଠାକୁର ପୂଜା ପାଉଥାନ୍ତି ଏବଂ ମାଆ ଭଉଣୀମାନେ ଘରଲୋକଙ୍କୁ ପଚାରନ୍ତି ଯେ ଆଜି ଠାକୁରଙ୍କ ପାଇଁ କ'ଣ ରୋଷେଇ ହେବ? ଏହା ଆମ ହିନ୍ଦୁ-ସଂସ୍କୃତିର

ସଭ୍ୟତା। ରନ୍ଧାବଢ଼ା ମଧ୍ୟ ନିଜ ପାଇଁ କରା ନ ଯାଇ ଠାକୁରଙ୍କ ପାଇଁ କରାଯାଏ। ଗୀତା କହେ—

**ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ ।**

(୩ । ୧୩)

''ଯେଉଁମାନେ କେବଳ ନିଜ ପାଇଁ ରନ୍ଧନ କରନ୍ତି, ସେହି ପାପୀମାନେ ପାପ ହିଁ ଭକ୍ଷଣ କରନ୍ତି।''

ଯଦି କେହି କହେ ଯେ ଆଜି ବେଶୀ ଶୀତ ହେଉଛି, ତେଣୁ ଠାକୁରଙ୍କୁ ଆଜି ଗରମ ଗରମ ହାଲୁଆ ଭୋଗ ଲଗାଅ, ଏପଟେ ତା' ନିଜ ପାଟିରୁ ହାଲୁଆ ଖାଇବାକୁ ଲାଳ ବାହାରୁଥାଏ, ତେବେ ତାହା ଠାକୁରଙ୍କ ଭୋଗ ପାଇଁ ଉପଯୋଗୀ ହେବ ନାହିଁ; କାରଣ ତାହା ଅଇଁଠା ହୋଇଗଲା। କିନ୍ତୁ ଠାକୁରଙ୍କ ପାଇଁ ତିଆରି ହୋଇଥିବା ପ୍ରସାଦରେ ଲୁଣ ଭାଗ ଠିକ୍ ଅଛି କି ନାହିଁ ପରୀକ୍ଷା କରିବା ପାଇଁ ଅଳ୍ପ ଟିକିଏ ଜିନିଷ ନେଇ (ପାକଶାଳା ବାହାରେ) ଗ୍ୱଖିଦେଲେ ମଧ୍ୟ ତାହାକୁ ଅଇଁଠା ଧରାଯିବ ନାହିଁ। ଏହିପରି ଭାବରେ ମନରେ ଖାଇବାର ଲାଳସା ଥିଲେ ନ ଗ୍ୱଖିଥିଲେ ମଧ୍ୟ ଅଇଁଠା ହୋଇଯାଏ ଏବଂ ମନରେ ଖାଇବାର ଲାଳସା ନ ଥିଲେ ଗ୍ୱଖିଲେ ମଧ୍ୟ ଅଇଁଠା ହୁଏ ନାହିଁ; କାରଣ ଏଥିରେ ଭାବ ମୁଖ୍ୟ ହୋଇଥାଏ। ଏଣୁ ନିଜେ ଖାଇବାର ଲାଳସା ନ ରଖି ଠାକୁରଙ୍କୁ ଭୋଗ ଲଗାଇବା ଉଚିତ ଏବଂ ତା'ପରେ ତାହାକୁ ଠାକୁରଙ୍କ ପ୍ରସାଦ ମନେକରି ଗ୍ରହଣ କରିବା ଉଚିତ। ଅନ୍ନକୁଟ ପ୍ରସାଦରେ ରସଗୋଲା ମଧ୍ୟ ଥାଏ ଏବଂ କଲରା ତରକାରୀ ମଧ୍ୟ ଥାଏ। ଏଥିମଧ୍ୟରୁ ଗୋଟିଏ ମିଠା ଓ ଗୋଟିଏ ପିତା, କିନ୍ତୁ ଦୁଇଟିଯାକ ଭଗବାନଙ୍କର ହିଁ ପ୍ରସାଦ। ପ୍ରସାଦରେ ସ୍ୱାଦ କଥା ବିଗ୍ୱର କରାଯାଏ ନାହିଁ, ବରଂ ସ୍ୱାଦରେ ପ୍ରସାଦ ଭାବନା କରାଯାଏ*; କାରଣ ପ୍ରସାଦ ଇନ୍ଦ୍ରିୟମାନଙ୍କର ବିଷୟ ନୁହେଁ, ଏହା ଭଗବଦ୍ଭାବର ବିଷୟ। ଏହିପରି ସମସ୍ତ ପଦାର୍ଥ ଓ କ୍ରିୟାକୁ ଭଗବାନଙ୍କ ନିକଟରେ ଅର୍ପଣ କରିଦେଲେ ତାହା ଠାକୁରଙ୍କର ପ୍ରସାଦ ଅର୍ଥାତ୍ ଭଗବତ୍‌ସ୍ୱରୂପ ହୋଇଯିବ। କାରଣ ସବୁକିଛି (କ୍ରିୟା ଓ ପଦାର୍ଥ) ଭଗବାନଙ୍କର ହୋଇଥିବାରୁ ବସ୍ତୁଗୁଡ଼ିକ ମଧ୍ୟରେ ଓ ଭଗବାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରହିଲା ନାହିଁ। ଯେପରି କି—ଧନ ଧନବାନ୍‌ର

---

* ପ୍ରସାଦରେ ସ୍ୱାଦବୁଦ୍ଧିର ପ୍ରାଧାନ୍ୟ ରହିବା ଠିକ୍ ନୁହେଁ। ସ୍ୱାଦିଷ୍ଟ ଲାଗିଲେ କିଛି ଦୋଷ ନାହିଁ, ବରଂ ସ୍ୱାଦ ଗ୍ରହଣ କରିବା ଦୋଷ। ସ୍ୱାଦ ଜଣା ପଡ଼ିବା ଦୋଷାବହ ନୁହେଁ, ସ୍ୱାଦ ପ୍ରତି ଆସକ୍ତି ହେବା ଦୋଷାବହ।

ହୋଇଥିବାରୁ ଧନ ଓ ଧନବାନ୍ ମଧ୍ୟରେ କୌଣସି ପ୍ରଭେଦ ନ ଥାଏ; କାରଣ ଧନ ବିନା ଧନବାନ୍ ସଂଜ୍ଞା ହୋଇ ପାରେ ନାହିଁ ଏବଂ ଧନବାନ୍ ବିନା ଧନର କୌଣସି ମହତ୍ତ୍ୱ ରହେ ନାହିଁ। କ୍ରିୟା ଓ ପଦାର୍ଥ ହେଉଛି ପ୍ରକୃତିର କାର୍ଯ୍ୟ ବା ସଂସାର; ଏବଂ ପ୍ରକୃତି ହେଉଛି ଭଗବାନଙ୍କର ଶକ୍ତି। ଶକ୍ତି ଓ ଶକ୍ତିମାନ୍ ମଧ୍ୟରେ ଏକତ୍ୱ ରହିଥାଏ। ଶକ୍ତି ବିନା ଶକ୍ତିମାନ୍ ଓ ଶକ୍ତିମାନ୍ ବିନା ଶକ୍ତିର କୌଣସି ମୂଲ୍ୟ ନାହିଁ*। ଅତଏବ ଭଗବାନଙ୍କର ହୋଇଥିବାରୁ ସବୁ ଜିନିଷ ଭଗବତ୍‌ସ୍ୱରୂପ—**'ବାସୁଦେବଃ ସର୍ବମ୍'**।

ଏପରି ଭାବନା ରଖନ୍ତୁ ଯେ ମୁଁ ଭଗବାନଙ୍କର, ଭଗବାନଙ୍କ ଘରେ ରହୁଛି, ଭଗବାନଙ୍କର ହିଁ କାମ କରୁଛି, ଭଗବାନଙ୍କ ପ୍ରଦତ୍ତ ପ୍ରସାଦ ସେବନ କରୁଛି ଏବଂ ଭଗବତ୍‌ପ୍ରଦତ୍ତ ପ୍ରସାଦ ଦ୍ୱାରା ଭଗବାନଙ୍କ ଜନଙ୍କର ସେବା କରୁଛି। ଏଭଳି ସମସ୍ତେ ମାନି ପାରିବେ। ସ୍ତ୍ରୀ-ପୁରୁଷ, ଛୋଟ-ବଡ଼, ବୁଦ୍ଧିମାନ୍-ବୁଦ୍ଧିହୀନ, ଶିକ୍ଷିତ-ଅଶିକ୍ଷିତ, ରୁଗ୍ଣ-ସୁସ୍ଥ ଯେ କେହି ଯେକୌଣସି ବର୍ଣ୍ଣ, ଆଶ୍ରମ, ଦେଶ, ବେଶ ଓ ସମ୍ପ୍ରଦାୟର ହୋଇଥାଉ ନା କାହିଁକି, ସମସ୍ତେ ଏହା ମାନି ପାରିବେ। ସମସ୍ତେ କ୍ରିୟା ଓ ପଦାର୍ଥଗୁଡ଼ିକୁ ତଥା ନିଜକୁ ଭଗବାନଙ୍କ ନିକଟରେ ସମର୍ପଣ କରିପାରିବେ। ଏପରି ସମର୍ପଣ କରିଦେଲେ କ'ଣ ହେବ, ତାହା ଭଗବାନ କହୁଛନ୍ତି—

**ଶୁଭାଶୁଭଫଳୈରେବଂ ମୋକ୍ଷ୍ୟସେ କର୍ମବନ୍ଧନୈଃ।**
**ସନ୍ନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତୋ ମାମୁପୈଷ୍ୟସି॥**

(ଗୀତା ୯। ୨୮)

''ଏହିପରି ମୋତେ ଅର୍ପଣ କରିଦେଲେ କର୍ମବନ୍ଧନ ହେଉଥିବା ଶୁଭ (ବିହିତ) ଓ ଅଶୁଭ (ନିଷିଦ୍ଧ) କର୍ମର ଫଳରୁ ତୁମେ ମୁକ୍ତ ହୋଇଯିବ। ନିଜ ସମେତ ସବୁକିଛି ମୋତେ ଅର୍ପଣ କରି ଏବଂ ସବୁଥିରୁ ମୁକ୍ତ ହୋଇ ତୁମେ ମୋତେ ପାଇଯିବ ଅର୍ଥାତ୍ ମୋର ସ୍ୱରୂପ ହୋଇଯିବ।''

ନିଆଁରେ ଖପରା, ପଥର, ଏପରି କି ଘନ କଳା କୋଇଲା ପକାଇଦେଲେ ମଧ୍ୟ ତାହା ଅଗ୍ନିସ୍ୱରୂପ ହୋଇ ଝଟକିଉଠେ, ସେହିପରି ଭଗବାନଙ୍କ ନିକଟରେ ଅର୍ପଣ କରିଦେଲେ ଅର୍ପିତ ବସ୍ତୁ (କ୍ରିୟା ଓ ପଦାର୍ଥ) ତଥା ଅର୍ପକ—ଉଭୟେ ଭଗବତ୍‌ସ୍ୱରୂପ ହୋଇ ଦୀପ୍ତିମାନ ହୋଇ ଉଠନ୍ତି।

---

* ଏଠାରେ ଏପରି ବୁଝିବା ଉଚିତ ଯେ ଶକ୍ତିମାନ୍ ବିନା ଶକ୍ତି ସିନା ରହିପାରେ ନାହିଁ, କିନ୍ତୁ ଶକ୍ତି ବିନା ଶକ୍ତିମାନ୍ ରହିପାରେ; ମାତ୍ର ତାହାର 'ଶକ୍ତିମାନ୍' ସଂଜ୍ଞା ରହେ ନାହିଁ। ଶକ୍ତିମାନ୍ ପୂର୍ଣ୍ଣତଃ ସ୍ୱତନ୍ତ୍ର ତତ୍ତ୍ୱ ଅଟେ। ଶକ୍ତି ସ୍ୱତନ୍ତ୍ର ତତ୍ତ୍ୱ ନୁହେଁ।

ଜଣେ ସଦାଗ୍ରହୀ ମହାଜନ ଥିଲେ । ସେ ଥିଲେ ଭଗବାନଙ୍କର ଜଣେ ଭକ୍ତ । ତାଙ୍କୁ ଦର୍ଶନ କରିବା ପାଇଁ ଜଣେ ସାଧୁ ତାଙ୍କ ଘରକୁ ଆସିଲେ । ତାଙ୍କ ସହିତ ଭେଟ ହୋଇ ସାଧୁ ଜଣକ ଅତ୍ୟନ୍ତ ପ୍ରସନ୍ନ ହେଲେ । ସାଧୁ ତାଙ୍କର ପରିଚୟ ପଗ୍ଚରିବାରୁ ମହାଜନ କହିଲେ—ମୁଁ ଭଗବାନଙ୍କର ଏବଂ ଏ ଘରଦ୍ୱାର ମଧ୍ୟ ଭଗବାନଙ୍କର । ମହାଜନ ସାଧୁଙ୍କୁ ନିଜର ସବୁ ଘର ବୁଲାଇ ଦେଖାଇଲେ । ସାଧୁ କହିଲେ—ଏ ଗାଡ଼ି କାହାର? ମହାଜନ କହିଲେ—ଠାକୁରଙ୍କର! ଏସବୁ ଜିନିଷ କାହାର? ଠାକୁରଙ୍କର! ଏ ପିଲାଛୁଆ କାହାର? ଠାକୁରଙ୍କର! ଏ ସ୍ତ୍ରୀ କାହାର? ଠାକୁରଙ୍କର! ଏ ଗ୍ଚକର ଗ୍ଚକରାଣୀ କାହାର? ଠାକୁରଙ୍କର! ଘର ଦେଖାଇସାରି ସେ ଛାତ ଉପରକୁ ସାଧୁଙ୍କୁ ନେଇଗଲେ, ଯେଉଁଠି ଠାକୁରଙ୍କର ମନ୍ଦିର ଥିଲା । ସାଧୁ ପଗ୍ଚରିଲେ—ଏ ମନ୍ଦିର କାହାର? ଠାକୁରଙ୍କର! ସୁନାରୁପାର ଏ ବାସନକୁସନ କାହାର? ଠାକୁରଙ୍କର! ଏ ଲୁଗାପଟା ଓ ଅଳଂକାର କାହାର? ଠାକୁରଙ୍କର! ଶେଷକୁ ସାଧୁ ଜଣକ ଠାକୁରଙ୍କୁ ଦେଖାଇ କହିଲେ—ଇଏ କାହାର? ମହାଜନ କହିଲେ—ଇଏ ମୋର*! କହିବାର ଉଦ୍ଦେଶ୍ୟ ହେଲା, ସବୁ ଜିନିଷ ଠାକୁରଙ୍କର ଓ ଠାକୁରଙ୍କ ସ୍ୱରୂପ, କିନ୍ତୁ ଠାକୁର ହେଉଛନ୍ତି ମୋର । ଠାକୁର ଆମର ହୋଇଥିବାରୁ ସବୁ ଜିନିଷ ମଧ୍ୟ ଆମର ହିଁ ହେଲା, କିନ୍ତୁ ଠାକୁରଙ୍କ ଯୋଗୁଁ ଆମର ହୋଇଥିବା ହେତୁ ସେଗୁଡ଼ିକ ଅତ୍ୟନ୍ତ ପବିତ୍ର ହୋଇଗଲା । ସ୍ୱତନ୍ତ୍ରଭାବରେ ଆମର ହେଲେ ସେଗୁଡ଼ିକ ଅତ୍ୟନ୍ତ ଅପବିତ୍ର ହୋଇଯିବ!

ରତନଗଡ଼ର ବଖତନାଥ ନାମକ ଜଣେ ସନ୍ଥଙ୍କ ଜୀବନୀରୁ ଗୋଟିଏ କଥା ଶୁଣିବାକୁ ମିଳେ । ସେ ଜଣେ ଉଚ୍ଚକୋଟିର ମହାତ୍ମା ଥିଲେ । ଆସାମରୁ ଜଣେ ଲୋକ ତାଙ୍କ ପାଇଁ ଗୋଟିଏ ଉଲ୍ ଗ୍ଚଦର ଆଣିଥିଲେ ଏବଂ ତାଙ୍କୁ ଦେଇ କହିଲେ—ମହାରାଜ! ଶୀତ ଦିନ ଆସିଲାଣି, ଆପଣ ଏହାକୁ କାରବାର କରିବେ । କିଛି ସମୟ ପରେ ଜଣେ ବ୍ରାହ୍ମଣ ଆସିଲେ । ସେ ଗ୍ଚଦରଟିକୁ ଦେଖି କହିଲେ—ମହାରାଜ! ଗ୍ଚଦରଟି ତ ବହୁତ ଭଲ ହୋଇଛି! ଦେଖିସାରି ସେ ଗ୍ଚଦରଟିକୁ ରଖିଦେଲେ । କିଛି ସମୟ ପରେ ସେ ଯିବାକୁ ବାହାରିବାରୁ ମହାତ୍ମା ଜଣକ ତାଙ୍କୁ କହିଲେ—ବ୍ରାହ୍ମଣଦେବ! ଆପଣ ଏ ଗ୍ଚଦରଟିକୁ ନେଇଯାଆନ୍ତୁ । ବ୍ରାହ୍ମଣ କହିଲେ—ମହାରାଜ! ଏହା ତ ଆପଣଙ୍କ ପାଇଁ ଆସିଛି । ସେ ଲୋକଟି ଅତି ଶ୍ରଦ୍ଧାରେ ଆପଣଙ୍କ ପାଇଁ ଆଣିଛି, ତେଣୁ ଆପଣ ରଖନ୍ତୁ ।

---

* ତନ ଭୀ ତେରା ମନ ଭୀ ତେରା, ତେରା ପିଣ୍ଡ ପରାନ ।
ସବ କୁଛ ତେରା ତୂ ହୈ ମେରା, ଯହ ଦାଦୂ କା ଗ୍ୟାନ ॥

ମହାତ୍ମା କହିଲେ—ନା, ନା ଆପଣ ନେଇଯାଆନ୍ତୁ। ବ୍ରାହ୍ମଣ କହିଲେ—ମୁଁ ଆପଣଙ୍କ ଜିନିଷ କାହିଁକି ନେବି? ମହାତ୍ମା କହିଲେ—ଏହା ମୋ ପାଇଁ ଆଉ ଉପଯୋଗୀ ନୁହେଁ। ଖରାପ ଭାବିବେନି, ଆପଣ ଏହାକୁ ପସନ୍ଦ କରିନେଲେ ମାନେ ଏହା ଆପଣଙ୍କର ହୋଇଗଲା! ବ୍ରାହ୍ମଣ ନେବା ପାଇଁ ସଂକୋଚ କରୁଥିଲେ, ତଥାପି ମହାତ୍ମା ବାଧ୍ୟ କରି ତାଙ୍କୁ ଦେଇଦେଲେ। ଏହାର କାରଣ ହେଲା, ବ୍ରାହ୍ମଣଙ୍କ ମନ ସେଥିପ୍ରତି ଆକୃଷ୍ଟ ହୋଇଯିବାରୁ ତାହା ଉଚ୍ଛିଷ୍ଟ ଓ ଅପବିତ୍ର ହୋଇଯାଇଥିଲା, ମହାତ୍ମାଙ୍କ ପାଇଁ ଉପଯୋଗୀ ହୋଇ ରହି ନ ଥିଲା। ଏହିପରି ଯେଉଁ ଜିନିଷ ପ୍ରତି ଆମର ମନ ଆକୃଷ୍ଟ ହୋଇଯାଏ, ସେଥିରେ ଆସକ୍ତି ହୋଇଯାଏ, ତାହା ଅପବିତ୍ର ହୋଇଯାଏ।

ବସ୍ତୁଗୁଡ଼ିକୁ ନିଜର ମାନିବା ମାତ୍ରେ ସେଗୁଡ଼ିକ ଅପବିତ୍ର ହୋଇଯାଏ ଏବଂ ଭଗବାନଙ୍କର ମାନିନେବା ମାତ୍ରେ ପବିତ୍ର ଓ ଭଗବତ୍‌ସ୍ୱରୂପ ହୋଇଯାଏ। ସେହିପରି ଆମେ ନିଜକୁ ଭଗବାନଙ୍କ ଠାରୁ ଭିନ୍ନ ମନେକଲେ ଅପବିତ୍ର ହୋଇଯାଉ ଏବଂ ଭଗବାନଙ୍କର ମନେକଲେ ପବିତ୍ର ଓ ଭଗବତ୍‌ସ୍ୱରୂପ ହୋଇଯାଉ। ବାସ୍ତବରେ ସବୁ ଜିନିଷ ଭଗବାନଙ୍କର ଓ ଭଗବତ୍‌ସ୍ୱରୂପ। ସେଗୁଡ଼ିକୁ ଭଗବାନଙ୍କ ଠାରୁ ଅଲଗା ମନେକରି ନିଜର ଭାବିବା ଆମର ଭୁଲ୍। ଏହି ଭୁଲ୍ ଦୂର କରିବାକୁ ହେବ। ଏହି ଭୁଲ୍‌କୁ ଦୂର କରିଦେଲେ ଶୁଭାଶୁଭ କର୍ମଗୁଡ଼ିକର ବନ୍ଧନ କଟିଯିବ ଏବଂ **'ବାସୁଦେବଃ ସର୍ବମ୍'**ର ଅନୁଭବ ହୋଇଯିବ।

**ପ୍ରଶ୍ନ**—ଆମେ କରିଥିବା କର୍ମର ଫଳସ୍ୱରୂପ ଯେଉଁ ଜିନିଷ ଆମକୁ ମିଳୁଛି, ତାହା ତ ଆମର ହିଁ ହେଲା! ପୁଣି ତାହାକୁ ଆମେ ନିଜର ନ ମାନିବୁ କାହିଁକି?

**ଉତ୍ତର**—ଯାହାଦ୍ୱାରା ଆମେ କର୍ମ କରିଛୁ, ସେହି କ୍ରିୟାଶକ୍ତି ମଧ୍ୟ ଆମର ନୁହେଁ ଏବଂ ତାହାର ଫଳସ୍ୱରୂପ ମିଳୁଥିବା ଜିନିଷ ମଧ୍ୟ ଆମର ନୁହେଁ। କାରଣ କ୍ରିୟାଶକ୍ତି ଓ ବସ୍ତୁ ଉଭୟ ଭଗବାନଙ୍କ ଠାରୁ ମିଳିଛି ଓ ଦିନେ ତାହାର ବିୟୋଗ ଘଟିବ। ଶରୀର ଦୁର୍ବଳ ହୋଇଗଲେ, ଏକାଙ୍ଗିବାତ ଧରିନେଲେ ଆମେ କିଛି କରି ପାରିବା କି? କର୍ମଫଳ ନିଜର ନୁହେଁ, ତେଣୁ ତାହାକୁ ଉପଭୋଗ କରିବା ବନ୍ଧନକାରକ—**'ଫଳେ ସକ୍ତୋ ନିବଧ୍ୟତେ'** (ଗୀତା ୫।୧୨)। କର୍ମ, କର୍ମସାମଗ୍ରୀ, କରିବାର ଯୋଗ୍ୟତା, ବଳ ଆଦି କିଛିହେଲେ ଆମର ନିଜର ନୁହେଁ। କେବଳ ସେତିକି ନୁହେଁ, ଏପରି କି କର୍ମ କରିବାର ବିବେକ ମଧ୍ୟ ଆମର ନୁହେଁ, ବରଂ ତାହା ଭଗବାନଙ୍କ ଠାରୁ ମିଳିଛି।

ଯେଉଁ ଜିନିଷ ସବୁଦିନ ପାଇଁ ଆମ ସଙ୍ଗରେ ରହିପାରେ ନାହିଁ ଏବଂ ଯାହା ସହିତ ଆମେ ସବୁଦିନ ପାଇଁ ରହି ପାରିବା ନାହିଁ, ଯାହା ଉପରେ ଆମର ଆଧିପତ୍ୟ ଚଳେ ନାହିଁ, ଯାହା ମିଳିଛି ଓ ଦିନେ ଛାଡ଼ି ଚାଲିଯିବ, ତାହା ଆମର ହେଲା କିପରି? କଦାପି ଆମର ନୁହେଁ। ଯେଉଁ ଜିନିଷ ଆମର ନିଜର ନୁହେଁ, ତାହାକୁ ପାଇବା ପାଇଁ କାମନା ହେବ କାହିଁକି? ତାହାକୁ ତ୍ୟାଗ କରିବାର ଅଭିମାନ ମଧ୍ୟ କିପରି ହୋଇ ପାରିବ? ତାହାକୁ ନିଜର ଭାବି ଆମେ ବେଇମାନି କରିଥିଲେ। ଏବେ ନିଜର ନ ଭାବିବାରୁ କେବଳ ସେଇ ବେଇମାନିକୁ ତ୍ୟାଗ କଲେ। ଏଥିରେ ଅଭିମାନ କେଉଁଥିପାଇଁ? ବେଇମାନି ତ୍ୟାଗ କରିବାର ନାମ ମୁକ୍ତି।

ଯାହା ଆମର ନିଜର ନୁହେଁ, ବରଂ ଅନ୍ୟର (ଭଗବାନଙ୍କର) ଏବଂ ଯାହା ନିରନ୍ତର ଆମକୁ ଛାଡ଼ି ଚାଲିଯାଉଛି, ତାହାକୁ ଛାଡ଼ିବା ଯଦି କଠିନ ହେବ, ତେବେ ଆଉ ସହଜ କ'ଣ ହୋଇପାରେ? ତାହାକୁ ନିଜର ଭାବି ନିଜ ପାଖରେ ରଖିବା ବରଂ କଠିନ, ତ୍ୟାଗ କରିବା ଆଦୌ କଠିନ ନୁହେଁ। ଯଦି ଏପରି ମାନିନିଆଯାଏ ଯେ ତ୍ୟାଗ କରିବା କଠିନ, ତେବେ ରଖିବା ତ ଏକବାରେ ଅସମ୍ଭବ! ଅସମ୍ଭବ ଅପେକ୍ଷା କଠିନ ମଧ୍ୟ ସହଜ ହୋଇଥାଏ। ଜଣେ ଯୁବକ ମୋତେ କହିଲେ—"ମୋ ଘରେ ଭଡ଼ା ନେଇ ରହିଥିବା ଗୋଟିଏ ଝିଅ ବାରମ୍ବାର କୁଚେଷ୍ଟା କରୁଥିଲା, କିନ୍ତୁ ମୁଁ କଦାପି ସେଥିରେ ବିଚଳିତ ହେଲି ନାହିଁ!" ମୁଁ ତାଙ୍କୁ କହିଲି—"ତୁମେ ବଡ଼ ଜିତେନ୍ଦ୍ରିୟ"। ସେ କହିଲେ—"ମୁଁ ଯେ ବଡ଼ ଜିତେନ୍ଦ୍ରିୟ, ସେ କଥା ନୁହେଁ, କିନ୍ତୁ ମୁଁ ଭାବେ ଯେ ସେହି ଝିଅ ଉପରେ ମୋର ଅଧିକାର ନାହିଁ; କେବଳ ଏହି ଭାବନା ଯୋଗୁଁ ବିଚଳିତ ହେଲି ନାହିଁ!" ଏଥିରୁ ଶିକ୍ଷା ନେବା ଉଚିତ ଯେ ଯେଉଁ ଜିନିଷ ଉପରେ ଆମର ଅଧିକାର ନାହିଁ, ଯାହା ଆମ ନିଜର ନୁହେଁ, ତାହାକୁ ଆମେ ନିଜର ମନେକରିବା ନାହିଁ। ତାହାକୁ ନିଜର ଓ ନିଜ ପାଇଁ ମନେକରିବା ବେଇମାନି। ସମସ୍ତ ଦୁଃଖ, ସନ୍ତାପ, ନରକ, ଜନ୍ମମରଣ ଇତ୍ୟାଦି ଏହି ବେଇମାନିର ହିଁ ଫଳ। ବେଇମାନି ଯୋଗୁଁ ସଂସାର ଆଜି ଆମ ପାଇଁ ଦୁଃଖଦ ହୋଇଛି, ଯାହା କି ପ୍ରକୃତରେ ଭଗବତ୍‌ସ୍ୱରୂପ। ଏହି ବେଇମାନିକୁ ଛାଡ଼ିଦେଲେ ଅର୍ଥାତ୍ ଏକମାତ୍ର ଭଗବାନଙ୍କ ବ୍ୟତୀତ ଅନ୍ୟ କାହାକୁ ବି ନିଜର ନ ମାନିଲେ ଆମକୁ **'ବାସୁଦେବଃ ସର୍ବମ୍'**ର ଅନୁଭବ ହୋଇଯିବ।



# ୬. ଆମ ପ୍ରଭୁଙ୍କୁ କିପରି ଚିହ୍ନିବା?

**ଈଶ୍ୱରମୟ ଏ ଜଗତ ଭଲ ମନ୍ଦ ନାହିଁ କେହି ।**
**ଯେମନ୍ତ ଯାହାର ଭାବନା ଥାଇ ସେହିପରି ଫଳ ହୋଇ ॥**

ଏ ସମଗ୍ର ସଂସାର ସାକ୍ଷାତ୍ ପରମାତ୍ମାଙ୍କର ସ୍ୱରୂପ । ଏଥିରେ ଭଲ-ମନ୍ଦ, ଗୁଣ-ଦୋଷ ପ୍ରଭୃତି ଦ୍ୱିବିଧ ଭେଦ ନାହିଁ । ରାମଚରିତମାନସରେ କୁହାଯାଇଛି—

**ସୁନହୁ ତାତ ମାୟା କୃତ ଗୁନ ଅରୁ ଦୋଷ ଅନେକ ।**
**ଗୁନ ୟହ ଉଭୟ ନ ଦେଖିଅହିଁ ଦେଖିଅ ସୋ ଅବିବେକ ॥**

(ମାନସ, ଉତ୍ତର. ୪୧)

ଗୁଣ ଓ ଦୋଷ ମାୟାକୃତ, ଭଗବାନଙ୍କ ଠାରେ ଏ ଦୁଇଟିର ସ୍ଥାନ ନାହିଁ । ଯେଉଁମାନେ ମାୟାରେ ମୋହିତ, ସେହିମାନଙ୍କ ଦୃଷ୍ଟିରେ ଏ ଦୁଇଟି ଭଗବାନଙ୍କ ଠାରେ ଦେଖାଯାଏ । ପ୍ରକୃତ ଗୁଣ ହେଲା—ଗୁଣ ଓ ଦୋଷକୁ ନ ଦେଖିବା— ***'ଗୁନ ୟହ ଉଭୟ ନ ଦେଖିଅହିଁ ।'*** ଏ ଦୁଇଟିକୁ ଦେଖିବା ଅବିବେକ ଅଟେ ।

***'ଗୁନ ୟହ ଉଭୟ ନ ଦେଖିଅହିଁ'***ର ଦୁଇଟି ଅର୍ଥ ହୋଇପାରେ—(୧) ଗୁଣ ଓ ଦୋଷକୁ ନ ଦେଖି କେବଳ ଗୁଣ ଦେଖିବା, ଏବଂ (୨) ଗୁଣ ଓ ଦୋଷକୁ ନ ଦେଖି କେବଳ ପରମାତ୍ମାଙ୍କୁ ଦେଖିବା, ଯେ କି ଗୁଣ ଓ ଦୋଷରୁ ରହିତ ଓ ଗୁଣାତୀତ । ଗୁଣ ଓ ଦୋଷକୁ ଦେଖିବା ଅବିବେକ, ଅଜ୍ଞାନ, ମୂର୍ଖତା ଓ ଜଡ଼ତା ଅଟେ— ***'ଦେଖିଅ ସୋ ଅବିବେକ'*** । କାରଣ ପ୍ରକୃତରେ ସଂସାର ହିଁ ସାକ୍ଷାତ୍ ଭଗବାନ— ***'ଈଶ୍ୱରମୟ ଏ ଜଗତ'*** । ଏହା ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ରୂପ! ଈଶ୍ୱର ଭଲ ଓ ମନ୍ଦ ଉଭୟ ହୋଇ ନ ପାରନ୍ତି । ଈଶ୍ୱର ହେଉଛନ୍ତି ଅଦ୍ୱିତୀୟ ।

ଗୀତାରେ ଭଗବାନ କହିଛନ୍ତି—

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**

(୪ । ୧୧)

"ଯେଉଁମାନେ ଯେଉଁ ଭାବରେ ମୋତେ ଭଜନ୍ତି, ମୁଁ ମଧ୍ୟ ସେହି ଭାବରେ ସେମାନଙ୍କୁ ଭଜେ ।" ଅତଏବ ଆମେ ଭଲ ଓ ମନ୍ଦ—ଦୁଇ ରୂପକୁ ଦେଖିଲେ ଭଗବାନ ମଧ୍ୟ ଭଲ ଓ ମନ୍ଦ—ଦୁଇ ରୂପରେ ପ୍ରକଟିତ ହୁଅନ୍ତି ।

ଆମେ ଭଲ ଓ ମନ୍ଦକୁ ନ ଦେଖି, କେବଳ ଭଗବାନଙ୍କୁ ଦେଖିଲେ ଭଗବାନ ତାଙ୍କର ବାସ୍ତବ ରୂପରେ ପ୍ରକଟିତ ହେବେ—

**ଜିନ୍ହ କେଁ ରହୀ ଭାୱନା ଜୈସୀ । ପ୍ରଭୁ ମୂରତି ତିନ୍ହ ଦେଖୀ ତୈସୀ ॥**

(ମାନସ, ବାଲ. ୨୪୧ । ୨)

ଜଣେ ସନ୍ଥ ଥିଲେ । ତାଙ୍କୁ ଯଦି କେହି କହେ 'ଆପଣ ବହୁତ ବଡ଼ ମହାତ୍ମା', ସେ କହନ୍ତି—'ପ୍ରଭୁ ଶ୍ରୀରାମ!' ଯଦି କେହି କହେ 'ଆପଣ ବଡ଼ ଠକ', ସେ କହନ୍ତି—'ପ୍ରଭୁ ଶ୍ରୀରାମ!' ଯଦି କେହି କହେ 'ଆପଣ ବହୁତ ଭଲ ଲୋକ', ସେ କହନ୍ତି—'ପ୍ରଭୁ ଶ୍ରୀରାମ!' ଯଦି କେହି କହେ 'ଆପଣ ବହୁତ ଖରାପ ଲୋକ', ସେ କହନ୍ତି—'ପ୍ରଭୁ ଶ୍ରୀରାମ!' ଅଭିପ୍ରାୟ ଏହି ଯେ ସବୁକିଛି ପ୍ରଭୁ ଶ୍ରୀରାମ, ପୁଣି ସେଥିରେ ଭଲ ଓ ମନ୍ଦ କ'ଣ? ***'ଯେମନ୍ତ ଯାହାର ଭାବନା ଥାଇ ସେହିପରି ଫଳ ହୋଇ'*** । ଭାବନା ଯଦି କରିବେ, ଭଲ ଭାବନା କରନ୍ତୁ, ଖରାପ ଭାବନା କାହିଁକି କରିବେ? ମନେ ମନେ ମିଠାଇ ତିଆରି କରି ସେଥିରେ ଘିଅ ଓ ଚିନି କାହିଁକି କମ୍ ଦେବେ? ଏଥିରେ କଣ ଖର୍ଚ୍ଚ ପଡୁଛି? ତେଣୁ ଉତ୍ତମ ଉତ୍ତମ ଭାବନା କରିବା ଉଚିତ । ସେହି ଉତ୍ତମ ଭାବନା ହେଲା—**'ବାସୁଦେବଃ ସର୍ବମ୍'** ଅର୍ଥାତ୍ ସବୁକିଛି କେବଳ ପରମାତ୍ମା । ଏହା କେବଳ ଭାବନା ନୁହେଁ, ବରଂ ବାସ୍ତବିକତା । ଏହାକୁ ସ୍ୱୀକାର କରିବାରେ କୌଣସି ପରିଶ୍ରମ ପଡ଼େ ନାହିଁ କି ନିଜର କିଛି ବିଶେଷ ଯୋଗ୍ୟତା ବଢ଼ାଇବାକୁ ପଡ଼େ ନାହିଁ । ତା'ହେଲେ ଏତିକି ସ୍ୱୀକାର କରିବାରେ କ'ଣ ଅସୁବିଧା? ଏହା ଅତି ସରଳ ଓ ଉତ୍କୃଷ୍ଟ ଉପାୟ ।

**ପ୍ରଶ୍ନ**—ସଂସାରରେ କୌଣସି ଦୁରାଗ୍ରହୀକୁ ଦେଖିଲେ ତାହାକୁ ଭଗବତ୍ସ୍ୱରୂପ କେମିତି ମାନିବୁ?

**ଉତ୍ତର**—ଏପରି ଭାବିବା ଉଚିତ ଯେ ସେ ମଧ୍ୟ ଭଗବାନ, କିନ୍ତୁ ବର୍ତ୍ତମାନ ସେ କଳିଯୁଗର ଲୀଳା କରୁଛନ୍ତି । ବର୍ତ୍ତମାନ କଳିଯୁଗ ଚାଲିଛି, ତେଣୁ ସେ ଯୁଗ ଅନୁସାରେ ଲୀଳା କରୁଛନ୍ତି । ଭଗବାନ ବରାହରୂପ ଧାରଣ କରିଥିବା ସମୟରେ ବରାହ ପରି ଆଚରଣ କରିଥିଲେ । ବରାହ ଭଗବାନଙ୍କୁ ଦେଖି ହିରଣ୍ୟାକ୍ଷ ତାଙ୍କୁ 'ବନଗୋଚରମୃଗ' (ଜଙ୍ଗଲୀପଶୁ) ନାମରେ ଡାକିଥିଲା ଏବଂ ଭଗବାନ ତାକୁ 'ଗ୍ରାମସିଂହ' (କୁକୁର) ନାମରେ ଡାକିଥିଲେ (ଶ୍ରୀମଦ୍ଭା. ୩ । ୧୮ । ୨, ୧୦) । ଭଗବାନ ଯେଉଁଭଳି ରୂପ ଧାରଣ କରନ୍ତି, ସେହିଭଳି ଲୀଳା କରନ୍ତି ।

**ପ୍ରଶ୍ନ**—ସଂସାରକୁ ପରମାତ୍ମାଙ୍କର ସ୍ୱରୂପ କହନ୍ତି ଏବଂ ଦୁଃଖର ଘର ମଧ୍ୟ କହନ୍ତି—'**ଦୁଃଖାଳୟମଶାଶ୍ୱତମ୍**' (ଗୀତା ୮।୧୫)। ଯଦି ଏହା ପରମାତ୍ମାଙ୍କର ସ୍ୱରୂପ, ତେବେ ପୁଣି ଦୁଃଖର ଘର କିପରି ଏବଂ ଯଦି ଦୁଃଖର ଘର, ତେବେ ପରମାତ୍ମସ୍ୱରୂପ କିପରି?

**ଉତ୍ତର**—ଉଭୟ କଥା ଠିକ୍। ଯେ ସଂସାରରୁ କିଛି ଚାହେଁ ନାହିଁ, କେବଳ ଅନ୍ୟମାନଙ୍କର ସେବା କରେ ଓ ସେମାନଙ୍କୁ ସୁଖ ଦିଏ, ତା'ପାଇଁ ସଂସାର ପରମାତ୍ମସ୍ୱରୂପ ଏବଂ ଯେଉଁ ବ୍ୟକ୍ତି ସଂସାରରୁ ସୁଖ ପାଇବାକୁ ଚାହେଁ, ତା'ପାଇଁ ସଂସାର ଦୁଃଖର ଘର। ସୁଖ ଚାହୁଁଥିବା ବ୍ୟକ୍ତିକୁ ଅବଶ୍ୟ ଦୁଃଖ ମିଳେ—ଏହା ଅକାଟ୍ୟ ନିୟମ।

ଭକ୍ତିଯୋଗ ଦୃଷ୍ଟିରୁ ସମଗ୍ର ସଂସାର ଭଗବାନଙ୍କର ସ୍ୱରୂପ ଏବଂ ଜ୍ଞାନଯୋଗ ଦୃଷ୍ଟିରୁ ସଂସାର ଅସତ୍, ଜଡ଼ ଓ ଦୁଃଖ ରୂପ। ଜ୍ଞାନଯୋଗରେ ବିବେକ ମୁଖ୍ୟ ଏବଂ ବିବେକରେ ସତ୍-ଅସତ୍, ଜଡ଼-ଚେତନ, ନିତ୍ୟ-ଅନିତ୍ୟ, ନାଶବାନ୍-ଅବିନାଶୀ ଉଭୟର ସ୍ଥାନ ଅଛି। ବିବେକୀ ପୁରୁଷ ସଂସାରକୁ ଦୁଃଖରୂପ ମନେକରି ବର୍ଜନ କରେ—'**ଦୁଃଖମେବ ସର୍ବଂ ବିବେକିନଃ**' (ଯୋଗଦର୍ଶନ ୨।୧୫)। ଏଣୁ ଜ୍ଞାନଦୃଷ୍ଟିରୁ ସଂସାରକୁ ବର୍ଜନ କରିବା ଆବଶ୍ୟକ ଓ ଭକ୍ତିଦୃଷ୍ଟିରୁ ସମସ୍ତଙ୍କୁ ଭଗବଦ୍‌ସ୍ୱରୂପ ଭାବି ପ୍ରଣାମ କରିବା ଆବଶ୍ୟକ। ଭାଗବତରେ କୁହାଯାଇଛି—

**ବିସୃଜ୍ୟ ସ୍ମୟମାନାନ୍ ସ୍ୱାନ୍ ଦୃଶଂ ବ୍ରୀଡାଂ ଚ ଦୈହିକୀମ୍।**
**ପ୍ରଣମେଦ୍ ଦଣ୍ଡବଦ୍ ଭୂମାବାଶ୍ୱଚାଣ୍ଡାଳଗୋଖରମ୍॥**

(ଶ୍ରୀମଭା. ୧୧।୨୯।୧୬)

"ସ୍ୱଜନମାନେ ପରିହାସ କଲେ କରୁଥାନ୍ତୁ, ସେମାନଙ୍କ କଥା ନ ଶୁଣି, ଦେହାଭିମାନରୁ ଉତ୍ପନ୍ନ ଲଜ୍ଜାକୁ ପରିତ୍ୟାଗ କରି କୁକୁର, ଚଣ୍ଡାଳ, ଗାଈ ଓ ଗଧକୁ ମଧ୍ୟ ଭୂମିରେ ଲମ୍ବଭାବେ ଶୋଇ ପ୍ରଣାମ କର।"

ଭକ୍ତ କୁକୁର, ଚଣ୍ଡାଳ ପ୍ରଭୃତିଙ୍କୁ ପ୍ରଣାମ କରେ ନାହିଁ, ବରଂ ସେହି ରୂପରେ ଉପସ୍ଥିତ ଭଗବାନଙ୍କୁ ପ୍ରଣାମ କରେ। ଯେତେବେଳେ ପ୍ରଭୁ ରାମଚନ୍ଦ୍ର ଭରଦ୍ୱାଜଙ୍କୁ ଭେଟିଲେ, ସେତେବେଳେ ଭରଦ୍ୱାଜ ଭଗବାନଙ୍କୁ ପ୍ରଣାମ କଲେ ଓ ଭଗବାନ ଭରଦ୍ୱାଜଙ୍କୁ ପ୍ରଣାମ କଲେ—

**ମୁନି ରଘୁବୀର ପରସପର ନୱହୀଁ । ବଚନ ଅଗୋଚର ସୁଖୁ ଅନୁଭୱହୀଁ ॥**

(ମାନସ, ଅଯୋଧ୍ୟା. ୧୦୮ । ୨)

ଭଗବାନ ରାମଚନ୍ଦ୍ର କ୍ଷତ୍ରିୟ ହୋଇଥିବାରୁ ବ୍ରାହ୍ମଣଙ୍କୁ ପ୍ରଣାମ କରୁଛନ୍ତି ଏବଂ ଭରଦ୍ୱାଜ ଭକ୍ତ ହୋଇଥିବାରୁ ଭଗବାନଙ୍କୁ ପ୍ରଣାମ କରୁଛନ୍ତି । ପରସ୍ପରକୁ ପ୍ରଣାମ କରିବା ଦ୍ୱାରା ସେମାନଙ୍କୁ ଅଲୌକିକ ଆନନ୍ଦ ମିଳୁଛି! ସଂସାରରେ ଏଭଳି ଅନେକ ରୂପରେ ପ୍ରକଟିତ ଭଗବାନଙ୍କୁ ପ୍ରଣାମ କରି ଆନନ୍ଦିତ ହେବା ଉଚିତ । ସଂସାରରେ ଯାହା କିଛି ଅଛି, ସବୁ ଭଗବାନଙ୍କର ହିଁ କଳେବର—

**ଖଂ ବାୟୁମଗ୍ନିଂ ସଲିଲଂ ମହୀଂ ଚ**
**ଜ୍ୟୋତୀଂଷି ସତ୍ତ୍ୱାନି ଦିଶୋଦ୍ରୁମାଦୀନ୍ ।**
**ସରିତ୍ସମୁଦ୍ରାଂଶ୍ଚ ହରେଃ ଶରୀରଂ**
**ଯତ୍କିଞ୍ଚ ଭୂତଂ ପ୍ରଣମେଦନନ୍ୟଃ ॥**

(ଶ୍ରୀମଭା. ୧୧ । ୨ । ୪୧)

"ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଗ୍ରହ-ନକ୍ଷତ୍ର, ଜୀବଜନ୍ତୁ, ଦିଗବିଦିଗ, ବୃକ୍ଷ, ନଦୀ, ସମୁଦ୍ର—ସବୁକିଛି ଭଗବାନଙ୍କର ଶରୀର ବୋଲି ଭାବି ଭକ୍ତ ସମସ୍ତଙ୍କୁ ଅନନ୍ୟଭାବରେ ପ୍ରଣାମ କରେ ।"

ଅଦ୍ୱୈତବାଦକୁ ମାନନ୍ତୁ ବା ଦ୍ୱୈତବାଦକୁ ମାନନ୍ତୁ, ବିଶିଷ୍ଟାଦ୍ୱୈତବାଦକୁ ମାନନ୍ତୁ ବା ଦ୍ୱୈତାଦ୍ୱୈତବାଦକୁ ମାନନ୍ତୁ, ଶୁଦ୍ଧାଦ୍ୱୈତବାଦକୁ ମାନନ୍ତୁ ବା ଅଚିନ୍ତ୍ୟ ଭେଦାଭେଦବାଦକୁ ମାନନ୍ତୁ, ସବୁଥିରେ ପରମାତ୍ମା ଏକ ଅଟନ୍ତି । ପରମାତ୍ମାଙ୍କୁ ଦ୍ୱିଭୁଜୀ ମାନନ୍ତୁ, ଚତୁର୍ଭୁଜୀ ମାନନ୍ତୁ ବା ସହସ୍ରଭୁଜୀ ମାନନ୍ତୁ, ସାକାର ମାନନ୍ତୁ, ନିରାକାର ମାନନ୍ତୁ ବା ନରାକାର (ରାମ, କୃଷ୍ଣ ଆଦି) ମାନନ୍ତୁ ଅଥବା ନୀରାକାର (ଗଙ୍ଗା) ମାନନ୍ତୁ, ନିର୍ଗୁଣ ମାନନ୍ତୁ ବା ସଗୁଣ ମାନନ୍ତୁ, ସେ ଏକ ଅଟନ୍ତି । ସେହି ଅଦ୍ୱିତୀୟ ପରମାତ୍ମା ଅନେକ ରୂପରେ ପ୍ରକଟିତ । ସମସ୍ତ ରୂପ ଏକମାତ୍ର ପରମାତ୍ମାଙ୍କର ହିଁ ଅଙ୍ଗ । କୌଣସି ଗୋଟିଏ ଅଙ୍ଗକୁ ଧରିନେଲେ ସମଗ୍ର ପରମାତ୍ମା ମିଳିଯିବେ । ପରମାତ୍ମାଙ୍କର କୌଣସି ଗୋଟିଏ ନାମକୁ ହୃଦୟରେ ଧାରଣ କଲେ ତାହା ଦ୍ୱାରା ସମଗ୍ର ପରମାତ୍ମା ମିଳିଯିବେ!

ପରମାତ୍ମା ପୂର୍ଣ୍ଣ ଅଟନ୍ତି । ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ପରମାତ୍ମା ନ ଥିବେ—

**ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖମ୍ ।**
**ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥**

(ଗୀତା ୧୩ । ୧୩)

"ସେହି ପରମାତ୍ମାଙ୍କର ହାତ, ଗୋଡ଼, ଆଖି, ମୁଣ୍ଡ, ମୁହଁ, କାନ ଜଗତରେ ସବୁଆଡ଼େ ବ୍ୟାପି ରହିଛି । ସେ ସଂସାରରେ ସବୁକିଛି ବ୍ୟାପ୍ତ କରି ବିଦ୍ୟମାନ ।"

କଲମ ଓ କାଳିର କେଉଁ ସ୍ଥାନରେ କେଉଁ ଲିପି ନାହିଁ? ଅଭିଜ୍ଞ ବ୍ୟକ୍ତି ସେହି ଗୋଟିଏ କଲମରେ ଅନେକ ପ୍ରକାର ଲିପି ଲେଖିପାରେ । ସୁନା ମୁଣ୍ଡାରେ କେଉଁ ସ୍ଥାନରେ କେଉଁ ଗହଣା ନାହିଁ? ବଣିଆ ଗୋଟିଏ ସୁନାମୁଣ୍ଡାରୁ ହାର, କଙ୍କଣ, ଚେନ୍, କାନଫୁଲ ଆଦି ଅନେକ ଗହଣା ତିଆରି କରିପାରେ । ଲୁହାରେ କେଉଁଠି କେଉଁ ଅସ୍ତ୍ର ନାହିଁ? ମାଟିରେ ଓ ପଥରରେ କେଉଁଠି କେଉଁ ମୂର୍ତ୍ତି ନାହିଁ? ସେହିପରି ଭଗବାନଙ୍କ ଠାରେ କେଉଁଠି କେଉଁ ଜିନିଷ ନାହିଁ? ଭଗବାନଙ୍କ ଠାରୁ ଏ ସମଗ୍ର ସଂସାର ସୃଷ୍ଟି ହୋଇଛି ଓ ଶେଷରେ ତାଙ୍କରିଠାରେ ବିଲୀନ ହେବ । ପ୍ରଥମରୁ ସେଇ ଅଛନ୍ତି, ଶେଷରେ ମଧ୍ୟ ସେଇ ରହୁଛନ୍ତି, ପୁଣି ମଝିରେ ଅନ୍ୟ କେହି କୁଆଡୁ ଆସିବ ଓ କେଉଁଠୁ ଆସିବ? ଏ କଥାକୁ ଦୃଢ଼ଭାବେ ସ୍ୱୀକାର କରିନେଲେ ସର୍ବତ୍ର ଭଗବାନ ଦୃଶ୍ୟ ହେବାକୁ ଲାଗିବେ; କାରଣ ବସ୍ତୁତଃ ସେ ହିଁ ସର୍ବତ୍ର ବିଦ୍ୟମାନ!

ମାଟିରୁ ଉତ୍ପନ୍ନ ସମସ୍ତ ବସ୍ତୁ ମାଟି ହିଁ ଅଟେ । ଏହା ପରୀକ୍ଷା କରିବା ପାଇଁ ଗୋଟିଏ ଥାଳି ଆଣନ୍ତୁ । ସେଥିରେ କିଛି ଶୁଖିଲା ମାଟି ଓଜନ କରି ପୂରାନ୍ତୁ, କିଛି ଗହମ ମଧ୍ୟ ଓଜନ କରି ସେଥିରେ ବୁଣି ଦିଅନ୍ତୁ ଏବଂ ବାରମ୍ବାର ପାଣି ସିଞ୍ଚନ୍ତୁ । କିଛି ଦିନପରେ ଗହମଗଛ ଉଠିପଡ଼ିବ । ବର୍ତ୍ତମାନ ମାଟିକୁ (ସମ୍ପୂର୍ଣ୍ଣ ଶୁଖିଗଲା ପରେ) ଓଜନ କରି ଦେଖନ୍ତୁ । ମାଟି ପୂର୍ବ ଓଜନଠାରୁ କମ୍ ହେବ । ମାତ୍ର ମାଟି ସହିତ ଗହମ ଗଛକୁ ମିଶାଇ ଓଜନ କଲେ ପୂର୍ବରୁ ଶୁଖିଲା ମାଟି ଓ ବିହନ ଗହମର ଓଜନ ସହିତ ସମାନ ହେବ । ଏଥିରୁ ପ୍ରମାଣିତ ହେଲା ଯେ ଯେତିକି ମାଟି କମି ଯାଇଥିଲା, ତାହା ଗଛରେ ପରିଣତ ହୋଇଗଲା । ଅତଏବ ଗହମଗଛ ମଧ୍ୟ ମାଟି । ଗହମକୁ ଖାଇଦେଲେ ବା ଅଟା କରିଦେଲେ ତାହା ମାଟିରେ ହିଁ ପରିଣତ ହେବ । ଠିକ୍ ଏହିପରି ଆମର ଶରୀର ମାଟିରୁ ଉତ୍ପନ୍ନ ଓ ଶେଷରେ ମାଟିରେ ହିଁ

ମିଶିଯିବ । ଏ ସମଗ୍ର ସଂସାର ପରମାତ୍ମାଙ୍କ ଠାରୁ ଉତ୍ପନ୍ନ । ଅତଏବ ଯାହା କିଛି ଦେଖାଯାଇଛି ତାହା ପରମାତ୍ମା । ଏହା ଦୃଢ଼ଭାବରେ ମାନିନେଲେ ପ୍ରକୃତ ଜ୍ଞାନ ହୋଇଯିବ । କେତେ ସହଜ ଓ ସରଳ ଉପାୟ!

ଜଣେ ବାବାଜୀ କେଉଁଆଡ଼େ ଯାଉଥିଲେ । ଯାଉ ଯାଉ ସେ ପରିସ୍ରା କରିବାକୁ କୌଣସି ଫସଲ କିଆରି ଭିତରେ ପଶିଲେ । ସେହି କିଆରିର ମାଲିକ ତାଙ୍କୁ ଦେଖି ଭାବିଲା, ଏ ଜଣକ ପୂର୍ବରୁ ତରଭୁଜ ଚୋରି କରିଥିବା ଲୋକ । ଏହା ଭାବି ସେ ପଛରୁ ଆସି ତାଙ୍କ ମୁଣ୍ଡକୁ ଠେଙ୍ଗାରେ ପାହାରେ ପିଟିଦେଲା । ପିଟି ସାରି ଯେତେବେଳେ ସେ ଦେଖିଲା ଯେ ଏ ଜଣେ ବାବାଜୀ, ସେ ହାତ ଯୋଡ଼ି କହିଲା—ବାବା! ମୁଁ ଆପଣଙ୍କୁ ନ ଜାଣି ଚୋର ବୋଲି ଭାବି ବାଡ଼େଇ ଦେଲି, ତେଣୁ ଆପଣ ମୋତେ କ୍ଷମା କରନ୍ତୁ! ବାବାଜୀ କହିଲେ—କ୍ଷମା କ'ଣ କରିବି? ତୁ ତ ମୋତେ ମାରି ନାହୁଁ । ତୁ ଚୋରକୁ ମାରିଛୁ । ସେ କହିଲା—ଏବେ କ'ଣ କରିବି ଗୋସେଇଁ? ବାବାଜୀ କହିଲେ—ତୋର ଯେମିତି ଇଚ୍ଛା ସେମିତି କର । ସେ ବାବାଜୀଙ୍କୁ ବଳଦଗାଡ଼ିରେ ନେଇଯାଇ ଡାକ୍ତରଖାନାରେ ଭର୍ତ୍ତି କରିଦେଲା । ସେଠାରେ ତାଙ୍କ ମୁଣ୍ଡରେ ବ୍ୟାଣ୍ଡେଜ କରାଯିବା ପରେ ଜଣେ କ୍ଷୀର ଆଣିଲା ଓ କହିଲା—ଗୋସେଇଁ ! କ୍ଷୀର ପିଅନ୍ତୁ । ବାବାଜୀ କହିଲେ—ତୁ ତ ଭାରି ଚାଲାଖ, ଭାରି ହୁସିଆର । ତୋର ତ ବିଚିତ୍ର ବିଚିତ୍ର ରୂପ । ତୁ ତ ବିଚିତ୍ର ବିଚିତ୍ର ଲୀଳା କରୁଛୁ । ଆଗେ ତ ଠେଙ୍ଗାରେ ପିଟିଲୁ, ଏବେ କହୁଛୁ କ୍ଷୀର ପିଅ ! ସେ ଲୋକ ଜଣକ ଡରିଯାଇ କହିଲା—ବାବା! ମୁଁ ପିଟି ନାହିଁ । ବାବାଜୀ କହିଲେ—ଏକବାରେ ମିଛ କଥା; ମୁଁ ଚିହ୍ନିଛି, ତୁ ତ ବାଡ଼େଇ ଥିଲୁ, ତୁ ତ ପିଟିଛୁ । ତୋ ଛଡ଼ା ଆଉ କିଏ ଆସିଲା? କୁଆଡୁ ଆସିଲା? କେମିତି ଆସିଲା? ଆଗେ ତ ଠେଙ୍ଗାରେ ପିଟିଲୁ, ଏବେ କ୍ଷୀର ପିଆଇବାକୁ ଆସିଛୁ! ମୁଁ କ୍ଷୀର ପିଇବି ସତ, କିନ୍ତୁ ତୁ ହିଁ ମାରିଛୁ । ଏଇଭଳି ବାବାଜୀ ତ ନିଜ **'ବାସୁଦେବଃ ସର୍ବମ୍'** ଭାଷାରେ କହୁଥିଲେ; ମାତ୍ର ସେ ଲୋକଟି ଭାବୁଥିଲା ବାବାଜୀ ତାକୁ ଥାନାରେ ବନ୍ଧାଇ ନ ଦିଅନ୍ତୁ! ତାତ୍ପର୍ଯ୍ୟ ହେଲା, ସବୁରୂପରେ ଏକମାତ୍ର ଭଗବାନ ହିଁ ବିଦ୍ୟମାନ । ଗୋସ୍ୱାମୀ ତୁଳସୀଦାସ କହିଛନ୍ତି—

**ସୀୟ ରାମମୟ ସବ ଜଗ ଜାନୀ । କରଉଁ ପ୍ରନାମ ଜୋରି ଜୁଗ ପାନୀ ॥**

(ମାନସ, ବାଲ. ୮ । ୧)

ଭଗବାନଙ୍କର ଗୋଟିଏ ଗୋଟିଏ ଲୋମ ମୂଳରେ କୋଟି କୋଟି ବ୍ରହ୍ମାଣ୍ଡ ବିଦ୍ୟମାନ—

**ରୋମ ରୋମ ପ୍ରତି ଲାଗେ କୋଟି କୋଟି ବ୍ରହ୍ମଂଡ ॥**

(ମାନସ, ବାଳ. ୨୦୧)

ପ୍ରକୃତରେ ସେହି ବ୍ରହ୍ମାଣ୍ଡରୂପରେ ମଧ୍ୟ ଭଗବାନ ହିଁ ବିଦ୍ୟମାନ। ଏହି ବାସ୍ତବିକତାକୁ ସ୍ୱୀକାର କରିବା ପାଇଁ କୌଣସି ପୋଥି ପଢ଼ିବା ଦରକାର ନାହିଁ। ଏଥିଲାଗି ଶ୍ରବଣ-ମନନ-ନିଦିଧ୍ୟାସନ ବି ଦରକାର ନାହିଁ। ଆଖିବୁଜିବା, ନାକକୁ ଚିପିଧରିବା, ଯୋଗାଭ୍ୟାସ କରିବା, ପ୍ରାଣାୟାମ କରିବା, ଜଙ୍ଗଲକୁ ଯିବା, ଗୁମ୍ଫାରେ ରହିବା, ହିମାଳୟକୁ ଯିବା—କିଛି ଦରକାର ନାହିଁ। କେବଳ ଅନେକ ରୂପରେ ବିଦ୍ୟମାନ ନିଜର ପ୍ରିୟ ପ୍ରଭୁଙ୍କୁ ଚିହ୍ନି ଆନନ୍ଦିତ ହେବା ଆବଶ୍ୟକ ଅଥବା ପ୍ରଭୁପ୍ରଦତ୍ତ ଶକ୍ତି ଦ୍ୱାରା ଜପ, ଧ୍ୟାନ, ସ୍ୱାଧ୍ୟାୟ ସବୁକିଛି ତାଙ୍କରି ପାଇଁ କରିବା ଆବଶ୍ୟକ।

**ପ୍ରଶ୍ନ**—'ସବୁକିଛି ପରମାତ୍ମା'—ଏହାକୁ ଠିକ୍‌ଭାବେ ମାନିନେଲେ କଣ ଆଉ କିଛି କରିବା, ଜାଣିବା ଓ ପାଇବା ବାକି ରହେ ନାହିଁ?

**ଉତ୍ତର**—ଯଦି 'ସବୁକିଛି ପରମାତ୍ମା'—ଏହା ଅନୁଭବ ହୋଇଗଲା, ତେବେ ତ ଠିକ୍ କଥା, ନଚେତ୍ କେବଳ ଶିଖିବା ହିଁ ସାର ହେଲା। ଶିଖିଗଲେ ବ୍ୟକ୍ତି ନିଜକୁ ସିଦ୍ଧ ମହାପୁରୁଷ ଭାବି ଅଭିମାନ କରେ। ଏହାଦ୍ୱାରା ତା'ର ପତନ ହୁଏ। କାରଣ ଅଭିମାନ ହେଲେ ମନୁଷ୍ୟ ନିଜକୁ ଜ୍ଞାନୀ ଓ ଅନ୍ୟମାନଙ୍କୁ ଅଜ୍ଞାନୀ ଭାବେ, ଫଳରେ ଅନ୍ୟମାନଙ୍କ ପ୍ରତି ଦ୍ୱେଷ, ଘୃଣା, କ୍ରୋଧ ପ୍ରଭୃତି ଜାତ ହୁଏ। ପ୍ରକୃତରେ **'ବାସୁଦେବଃ ସର୍ବମ୍'**ର ଅନୁଭବ ହେଲେ କାହାରି ପ୍ରତି ଦ୍ୱେଷ, ଶତ୍ରୁତା, ଘୃଣା, କ୍ରୋଧ ପ୍ରଭୃତି ଜାତ ହୁଏ ନାହିଁ*। ଯଦି ସେ ଜାଣିବା ଉଦ୍ଦେଶ୍ୟରେ 'ସବୁକିଛି ପରମାତ୍ମା ଅଟନ୍ତି' ଏପରି ମାନୁଥାଏ, ତେବେ ସେ ଭଗବତ୍‌କୃପାରୁ ଜାଣିଯିବ।

'ମୁଁ ଅଛି' ଏଭଳି ଆମକୁ ନିଜ ଅସ୍ତିତ୍ୱର ଯେତେ ସ୍ପଷ୍ଟ ଓ ନିଃସନ୍ଦେହ ଅନୁଭବ ହେଉଛି, ସେତିକି ସ୍ପଷ୍ଟଭାବେ 'ସବୁକିଛି ପରମାତ୍ମା' ବୋଲି

---

* ଉମା ଜେ ରାମ ଚରନ ରତ ବିଗତ କାମ ମଦ କ୍ରୋଧ।
ନିଜ ପ୍ରଭୁମୟ ଦେଖହିଁ ଜଗତ କେହି ସନ କରହିଁ ବିରୋଧ ॥

(ମାନସ, ଉତ୍ତର. ୧୧୨ ଖ)

ଅନୁଭବ ହେବା ଆବଶ୍ୟକ । ଏଭଳି ଅନୁଭବ ହେଲେ ସାଂସାରିକ ଅନୁରାଗ ଓ ସୁଖାସକ୍ତି ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଏ ଏବଂ ସଂସାର ଆଉ ସଂସାର ରୂପରେ ନ ରହି ଭଗବତ୍‌ସ୍ୱରୂପ ହୋଇଯାଏ । ମୁଁ-ତୁ-ଇଏ-ସିଏ କିଛି ରହେ ନାହିଁ, ସବୁଆଡ଼େ କେବଳ ଭଗବାନ ହିଁ ଅନୁଭୂତ ହୁଅନ୍ତି; ପ୍ରକୃତରେ ଭଗବାନ ହିଁ ବିଦ୍ୟମାନ । ଏଭଳି ଅନୁଭବ କରିବା ପାଇଁ ଭଗବାନଙ୍କ ଠାରେ ନିଜକୁ ସ୍ଥିତ ନ କରି, ବରଂ ନିଜକୁ ଭଗବାନଙ୍କ ନିକଟରେ ସମର୍ପିତ କରିଦେବା ଆବଶ୍ୟକ । ଯଦି ତାଙ୍କଠାରେ ନିଜକୁ ସ୍ଥିତ କରିବା, ତେବେ ଅହମ୍ (ସ୍ଥିତ ହେଉଥିବା ବ୍ୟକ୍ତିତ୍ୱ) ଜୀବିତ ରହିବ । **'ବାସୁଦେବଃ ସର୍ବମ୍'** ଅନୁଭବ କରିବାରେ ଶରଣାଗତି ମୁଖ୍ୟ । ଶରଣାଗତିରେ ସାଧକ ପ୍ରଥମେ ଭଗବାନଙ୍କର ଆଶ୍ରିତ ହୁଏ ଓ ପରେ ତାଙ୍କଠାରେ ମିଶି ଏକାକାର ହୋଇଯାଏ । ଯେପରି ପ୍ରଥମେ କନ୍ୟାର ବିବାହ ହୁଏ ଓ ପରେ ସେ ନିଜ ଗୋତ୍ରକୁ ଛାଡ଼ି ସ୍ୱାମୀର ଗୋତ୍ରରେ ମିଶିଯାଏ, ଠିକ୍ ସେହିପରି ପ୍ରଥମେ ଭକ୍ତ 'ମୁଁ ଭଗବାନଙ୍କର ଓ ଭଗବାନ ମୋର' ଏହି ଭାବନାରେ ଭଗବାନଙ୍କର ଆଶ୍ରିତ ହୁଏ ଓ ପରେ ତା'ର ଶରୀର-ଇନ୍ଦ୍ରିୟ-ମନ-ବୁଦ୍ଧି ଅହମ୍ ସବୁ ଭଗବାନଙ୍କ ଠାରେ ଲୀନ ହୋଇଯାଆନ୍ତି, କେବଳ ଭଗବାନ ହିଁ ଅବଶେଷ ରହିଯାଆନ୍ତି । ପ୍ରକାରାନ୍ତରରେ କହିଲେ ପ୍ରଥମେ ସାଧକ 'ମୁଁ' ଓ 'ମୋର' ଛାଡ଼ି 'ତୁ' ଓ 'ତୋର'କୁ ସ୍ୱୀକାର କରେ ଏବଂ ପରବର୍ତ୍ତୀ କାଳରେ କେବଳ 'ତୁ' ରହିଯାଏ । ଏହା ହିଁ **'ବାସୁଦେବଃ ସର୍ବମ୍'** ।



# ୭. ଭଗବାନଙ୍କର ଅଲୌକିକ ସମଗ୍ରରୂପ

ଭଗବାନଙ୍କର ଏହା ସ୍ୱଭାବ ଯେ, ଯିଏ ଯେଉଁଭଳି ତାଙ୍କର ଆଶ୍ରୟ ନିଏ, ସେ ମଧ୍ୟ ସେହିଭଳି ତାକୁ ଆଶ୍ରୟ ଦିଅନ୍ତି ଏବଂ ଯିଏ ଯେଉଁ ଭାବରେ ତାଙ୍କୁ ଭଜେ, ସେ ମଧ୍ୟ ସେହି ଭାବ ଅନୁସାରେ ତାକୁ ଭଜନ୍ତି—

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**

(ଗୀତା ୪ । ୧୧)

ଯେତେବେଳେ ଭଗବାନଙ୍କ ବିଷୟରେ ଚର୍ଚ୍ଚା ଚାଲେ, ଭକ୍ତ ସେଥିରେ ଆନନ୍ଦରେ ମଗ୍ନ ହୋଇ ଆତ୍ମବିସ୍ମୃତ ହୋଇଯାଏ, ଅନ୍ୟ ସବୁ କଥା ଭୁଲିଯାଏ । ଭଗବାନ ମଧ୍ୟ ସେହିପରି ଭକ୍ତବିଷୟକ ଚର୍ଚ୍ଚାରେ ସବୁକିଛି ଭୁଲିଯାଆନ୍ତି । ଗୀତାର ଷଷ୍ଠ ଅଧ୍ୟାୟର ଶେଷରେ ଭକ୍ତର ପ୍ରସଙ୍ଗ ଆସିଗଲା ଯେ—

**ତପସ୍ୱିଭ୍ୟୋଽଧିକୋ ଯୋଗୀ ଜ୍ଞାନିଭ୍ୟୋଽପି ମତୋଽଧିକଃ ।**
**କର୍ମିଭ୍ୟଶ୍ଚାଧିକୋ ଯୋଗୀ ତସ୍ମାଦ୍ ଯୋଗୀ ଭବାର୍ଜୁନ ॥**

(ଗୀତା ୬ । ୪୬)

"ମୋ ମତରେ ତପସ୍ୱୀମାନଙ୍କ ଠାରୁ ମଧ୍ୟ ଯୋଗୀ ଶ୍ରେଷ୍ଠ, ଜ୍ଞାନୀମାନଙ୍କ ଠାରୁ ମଧ୍ୟ ଯୋଗୀ ଶ୍ରେଷ୍ଠ ଏବଂ କର୍ମୀମାନଙ୍କ ଠାରୁ ମଧ୍ୟ ଯୋଗୀ ଶ୍ରେଷ୍ଠ । ଏଣୁ ହେ ଅର୍ଜୁନ! ତୁମେ ଯୋଗୀ ହୁଅ ।"

**ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା ।**
**ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋ ମତଃ ॥**

(ଗୀତା ୬ । ୪୭)

"ସମସ୍ତ ଯୋଗୀଙ୍କ ମଧ୍ୟରେ ବି ଯେଉଁ ଶ୍ରଦ୍ଧାବାନ୍ ଭକ୍ତ ମୋ'ଠାରେ ତଲ୍ଲୀନମନା ହୋଇ (ପ୍ରେମପୂର୍ବକ) ମୋର ଭଜନ କରେ, ମୋ ମତରେ ସେ ସର୍ବଶ୍ରେଷ୍ଠ ଯୋଗୀ ।"

ଭକ୍ତର ପ୍ରସଙ୍ଗ ଚାଲିବାରୁ ଭଗବାନ ସେଥିରେ ଆନନ୍ଦବିଭୋର ହୋଇ ଅନ୍ୟ ସବୁ କଥା ଭୁଲିଗଲେ ଏବଂ ଅର୍ଜୁନ ପ୍ରଶ୍ନ ନ କରୁଣୁ ସେ ନିଜଆଡୁ ସପ୍ତମ ଅଧ୍ୟାୟର ବିଷୟ ଆରମ୍ଭ କରିଦେଲେ ! ଭଗବାନ କହିଲେ ଯେ—

**ମୁଁ ବିଜ୍ଞାନସହିତ ଜ୍ଞାନ କହିବି, ଯଦ୍ଦ୍ୱାରା ତୁମେ ମୋର ସମଗ୍ରରୂପକୁ ଜାଣିଯିବ । ମୋର ସମଗ୍ରରୂପକୁ ଜାଣିଯିବା ପରେ ଆଉ କିଛି ଜାଣିବା ବାକି ରହିବ ନାହିଁ; କାରଣ ଯଦି ମୋ ବ୍ୟତୀତ ଆଉ କିଛି ନାହିଁ, ତେବେ ପୁଣି ଆଉ କ'ଣ ଜାଣିବା ବାକି ରହିଲା?—'ମତ୍ତଃ ପରତରଂ ନାନ୍ୟତ୍କିଞ୍ଚିଦସ୍ତି ଧନଞ୍ଜୟ'** (ଗୀତା ୭ । ୭), **'ଯଜ୍ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ'** (ଗୀତା ୪ । ୩୫) । ଭଗବାନଙ୍କର ଏହି ସମଗ୍ରରୂପକୁ ଶରଣାଗତ ଭକ୍ତ ହିଁ ଜାଣିପାରେ । ଏଣୁ ଯେଉଁ ଭକ୍ତଜନ ଭଗବାନଙ୍କର ଶରଣ ନେଇ ନିଷ୍ଠାପୂର୍ବକ ସାଧନା କରନ୍ତି, ସେମାନେ ବିଜ୍ଞାନସହିତ ଜ୍ଞାନକୁ ଅର୍ଥାତ୍ ଭଗବାନଙ୍କର ସମଗ୍ରରୂପକୁ ଜାଣିଯାଆନ୍ତି । ଭଗବାନ କହିଛନ୍ତି—

**ଜରାମରଣମୋକ୍ଷାୟ ମାମାଶ୍ରିତ୍ୟ ଯତନ୍ତି ଯେ ।**
**ତେ ବ୍ରହ୍ମ ତଦ୍‌ବିଦୁଃ କୃତ୍ସ୍ନମଧ୍ୟାତ୍ମଂ କର୍ମ ଚାଖିଳମ୍ ॥**
**ସାଧିଭୂତାଧିଦୈବଂ ମାଂ ସାଧିଯଜ୍ଞଂ ଚ ଯେ ବିଦୁଃ ।**
**ପ୍ରୟାଣକାଲେଽପି ଚ ମାଂ ତେ ବିଦୁର୍ଯୁକ୍ତଚେତସଃ ॥**

(ଗୀତା ୭ । ୨୯,୩୦)

"ଜରା ଓ ମରଣରୁ ମୁକ୍ତି ପାଇବା ପାଇଁ ଯେଉଁମାନେ ମୋର ଆଶ୍ରୟ ନେଇ ପ୍ରଯତ୍ନ କରନ୍ତି, ସେମାନେ ସେହି ବ୍ରହ୍ମକୁ, ସମ୍ପୂର୍ଣ୍ଣ ଅଧ୍ୟାତ୍ମକୁ ଓ ସମ୍ପୂର୍ଣ୍ଣ କର୍ମକୁ ଜାଣିଯାଆନ୍ତି । ଯେଉଁମାନେ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହିତ ମୋତେ ଜାଣନ୍ତି, ସେହି ଯୁକ୍ତଚେତା ପୁରୁଷ ଅନ୍ତକାଳରେ ମଧ୍ୟ ମୋତେ ହିଁ ଜାଣନ୍ତି ଅର୍ଥାତ୍ ପ୍ରାପ୍ତ ହୁଅନ୍ତି ।"

ବ୍ରହ୍ମ (ନିର୍ଗୁଣନିରାକାର), ଅଧ୍ୟାତ୍ମ (ଅନନ୍ତ ଜୀବ) ଓ ଅଖିଳ କର୍ମ (ଉତ୍ପତ୍ତି-ସ୍ଥିତି-ପ୍ରଳୟର ସମସ୍ତ କ୍ରିୟା)—ଏହା **'ଜ୍ଞାନ'**ର ବିଭାଗ ଏବଂ ଅଧିଭୂତ (ନିଜ ଶରୀର ସମେତ ସମଗ୍ର ପାଞ୍ଚଭୌତିକ ଜଗତ), ଅଧିଦୈବ (ମନ ଓ ଇନ୍ଦ୍ରିୟଗଣଙ୍କର ଅଧିଷ୍ଠାତୃ ଦେବତାଙ୍କ ସମେତ ବ୍ରହ୍ମାଦି ସମସ୍ତ ଦେବତା), ତଥା ଅଧିଯଜ୍ଞ (ଅନ୍ତର୍ଯାମୀ ବିଷ୍ଣୁ ଓ ତାଙ୍କର ସମସ୍ତ ରୂପ)—ଏହା **'ବିଜ୍ଞାନ'**ର ବିଭାଗ । ଜ୍ଞାନ ବିଭାଗରେ ନିର୍ଗୁଣର ଓ ବିଜ୍ଞାନ ବିଭାଗରେ ସଗୁଣର ପ୍ରାଧାନ୍ୟ ରହିଛି ।

ଗୀତାରେ ଭଗବାନ ଦୁଇଟି ନିଷ୍ଠା ଦର୍ଶାଇଛନ୍ତି—କର୍ମଯୋଗ ଓ ଜ୍ଞାନଯୋଗ । ଉଭୟ ନିଷ୍ଠା ଲୌକିକ ଅଟେ—**'ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା'**

(ଗୀତା ୩ । ୩) । ମାତ୍ର ଭକ୍ତିଯୋଗ ଅଲୌକିକ ନିଷ୍ଠା । କାରଣ କର୍ମଯୋଗରେ 'କ୍ଷର' (ସଂସାର)ର ପ୍ରାଧାନ୍ୟ ଓ ଜ୍ଞାନଯୋଗରେ 'ଅକ୍ଷର' (ଜୀବାତ୍ମା)ର ପ୍ରାଧାନ୍ୟ ରହିଛି । ଉଭୟ କ୍ଷର ଓ ଅକ୍ଷର ଲୋକର ଅନ୍ତର୍ଗତ—**'ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ'** (ଗୀତା ୧୫ । ୧୬) । ଏଣୁ କର୍ମଯୋଗ ଓ ଜ୍ଞାନଯୋଗ ଲୌକିକ ନିଷ୍ଠା । ମାତ୍ର ଭକ୍ତିଯୋଗରେ ପରମାତ୍ମା ମୁଖ୍ୟ ହୋଇଥାନ୍ତି, ଯେ କି କ୍ଷର ଓ ଅକ୍ଷରଠାରୁ ଊର୍ଦ୍ଧ୍ୱରେ—

**ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।**

(ଗୀତା ୧୫ । ୧୭)

"ଉତ୍ତମ ପୁରୁଷ କିନ୍ତୁ ଅନ୍ୟ ଅଟେ, ଯିଏ କି ପରମାତ୍ମା ନାମରେ ଅଭିହିତ ।"

**ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।**

(ଗୀତା ୧୫ । ୧୮)

"ମୁଁ କ୍ଷରରୁ ଅତୀତ ଓ ଅକ୍ଷରରୁ ମଧ୍ୟ ଉତ୍ତମ ।"

**କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ କ୍ଷରାତ୍ମାନାବୀଶତେ ଦେବ ଏକଃ ।**

(ଶ୍ୱେତାଶ୍ୱତର. ୧ । ୧୦)

"ପ୍ରକୃତି କ୍ଷର (ନାଶବାନ୍) ଅଟେ ଓ ତାହାକୁ ଭୋଗ କରୁଥିବା ଜୀବାତ୍ମା ଅମୃତସ୍ୱରୂପ ଅକ୍ଷର (ଅବିନାଶୀ) ଅଟେ । ଏହି କ୍ଷର ଓ ଅକ୍ଷରକୁ ଜଣେ ଈଶ୍ୱର ନିଜ ଶାସନାଧୀନରେ ରଖନ୍ତି ।"

ଏଣୁ ଭକ୍ତିଯୋଗ ଅଲୌକିକ ନିଷ୍ଠା । ଭଗବାନଙ୍କ ସମଗ୍ରରୂପରେ ବ୍ରହ୍ମ, ଅଧ୍ୟାତ୍ମ ଓ କର୍ମ ମାଧ୍ୟମରେ ଲୌକିକ ନିଷ୍ଠା (କର୍ମଯୋଗ ଓ ଜ୍ଞାନଯୋଗ) ତଥା ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ମାଧ୍ୟମରେ ଅଲୌକିକ ନିଷ୍ଠା (ଭକ୍ତିଯୋଗ) କଥା ବର୍ଣ୍ଣିତ ।

ଜ୍ଞାନ ହେଉଛି ଲୌକିକ* ଓ ବିଜ୍ଞାନ ଅଲୌକିକ । ଆତ୍ମଜ୍ଞାନ ଲୌକିକ ଓ ପରମାତ୍ମଜ୍ଞାନ ଅଲୌକିକ । ମୁକ୍ତି ଲୌକିକ ଓ ପ୍ରେମ ଅଲୌକିକ । କରଣସାପେକ୍ଷ ସାଧନା ଲୌକିକ ଓ କରଣନିରପେକ୍ଷ ସାଧନା ଅଲୌକିକ । ଲୌକିକ ଓ ଅଲୌକିକ ଉଭୟ ସମଗ୍ର ଭଗବାନଙ୍କର ରୂପ ।

**ପ୍ରଶ୍ନ**—ବ୍ରହ୍ମ, ଅଧ୍ୟାତ୍ମ ଓ କର୍ମ ଲୌକିକ କିପରି?

---

* ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ । (ଗୀତା ୪ । ୩୮)
"ଇହଲୋକରେ ଜ୍ଞାନ ସଦୃଶ ପବିତ୍ରକାରୀ ଅନ୍ୟ କୌଣସି ସାଧନ ନାହିଁ ।"

**ଉତ୍ତର**—ଭଗବାନ ବ୍ରହ୍ମକୁ 'ଅକ୍ଷର' କହିଛନ୍ତି—**'ଅକ୍ଷରଂ ବ୍ରହ୍ମ ପରମମ୍'** (ଗୀତା ୮ । ୩) ଏବଂ ଜୀବକୁ ମଧ୍ୟ 'ଅକ୍ଷର' କହିଛନ୍ତି—**'ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ'** (ଗୀତା ୧୫ । ୧୬) । ଅତଏବ ବ୍ରହ୍ମ ଓ ଜୀବର ଐକ୍ୟ ଥିବାରୁ ବ୍ରହ୍ମ ମଧ୍ୟ ଲୌକିକ । ଏହି କାରଣରୁ ଜୀବ ଓ ବ୍ରହ୍ମକୁ ଏକ ମାନି ନିଆଯାଇଛି—**'ଜୀବୋ ବ୍ରହ୍ମୈବ ନାପରଃ'** । କ୍ଷେତ୍ର ସଙ୍ଗରେ ସମ୍ବନ୍ଧ ହେବାରୁ ଯିଏ 'ଜୀବ' ବୋଲାଏ, କ୍ଷେତ୍ର ସଙ୍ଗେ ସମ୍ବନ୍ଧ ନ ରହିଲେ ସେ 'ବ୍ରହ୍ମ' ନାମରେ ଅଭିହିତ ହୁଏ—**'କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ'** (ଗୀତା ୧୩ । ୨) । ଅନ୍ୟ ଶବ୍ଦରେ କହିଲେ ବ୍ୟଷ୍ଟିରୂପରେ ଯିଏ ଜୀବ, ସେ ହିଁ ସମଷ୍ଟିରୂପରେ ବ୍ରହ୍ମ ଅଟେ । ଅତଏବ ଜୀବ ଯେପରି ଲୋକର ଅନ୍ତର୍ଗତ, ସେହିପରି ବ୍ରହ୍ମ ମଧ୍ୟ ଲୋକର ଅନ୍ତର୍ଗତ ଅର୍ଥାତ୍ ବ୍ରହ୍ମ ଲୌକିକ ନିଷ୍ଠା ଦ୍ୱାରା ପ୍ରାପଣୀୟ ତତ୍ତ୍ୱ ।

'ଅଧ୍ୟାତ୍ମ' ଅର୍ଥାତ୍ ଜୀବ ଜଗତକୁ ଧରି ରଖିଛି—**'ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍'** (ଗୀତା ୭ । ୫) । ଜୀବର ସ୍ୱତନ୍ତ୍ର ସତ୍ତା ନାହିଁ । ଏଣୁ ଜଗତର ସଙ୍ଗରୁ ଜୀବ ମଧ୍ୟ ଜଗତ ଅର୍ଥାତ୍ ଲୌକିକ ହୋଇଯାଏ । ଏହି କାରଣରୁ ଗୀତାରେ ଜୀବ ପାଇଁ ମଧ୍ୟ 'ଜଗତ୍' ଶବ୍ଦ ବ୍ୟବହୃତ ହୋଇଛି—

**ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।**
**ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ୍ ॥**

(ଗୀତା ୭ । ୧୩)

"ତିନିଗୁଣରୂପକ ଭାବ ଦ୍ୱାରା ମୋହିତ ସମଗ୍ର ଜଗତ ଏହି ଗୁଣଗୁଡ଼ିକରୁ ଅତୀତ ଅବିନାଶୀ ମୋତେ ଜାଣେ ନାହିଁ ।"

ଲୋକର (ଜଗତର) ଅନ୍ତର୍ଗତ ହୋଇଥିବାରୁ ଜୀବ ଲୌକିକ ଅଟେ—**'ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ'** (ଗୀତା ୧୫ । ୧୬), **'ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ'** (ଗୀତା ୧୫ । ୭) ।

କର୍ମ ଦୁଇ ଭାଗରେ ବିଭକ୍ତ—ସକାମ ଓ ନିଷ୍କାମ । ଉଭୟ କର୍ମ ଲୋକର ଅନ୍ତର୍ଗତ ହୋଇଥିବାରୁ ଲୌକିକ ଅଟେ—

**ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ॥**

(ଗୀତା ୩ । ୯)

**କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା ॥**

(ଗୀତା ୪ । ୧୨)

**'କର୍ମାନୁବନ୍ଧୀନି ମନୁଷ୍ୟଲୋକେ'** (ଗୀତା ୧୫ । ୨)

**ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାନଘ ।**
**ଜ୍ଞାନଯୋଗେନ ସାଙ୍ଖ୍ୟାନାଂ କର୍ମଯୋଗେନ ଯୋଗିନାମ୍ ॥**

(ଗୀତା ୩ । ୩)*

**ପ୍ରଶ୍ନ**—ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ଅଲୌକିକ କିପରି?

**ଉତ୍ତର**—ଅଧିଭୂତ ଅର୍ଥାତ୍ ସମଗ୍ର ପାଞ୍ଚଭୌତିକ ଜଗତ ଭଗବାନଙ୍କର ଶରୀର ହୋଇଥିବାରୁ ଅଲୌକିକ ଅଟେ—

**ଖଂ ବାୟୁମଗ୍ନିଂ ସଲିଲଂ ମହୀଂ ଚ**
**ଜ୍ୟୋତୀଂଷି ସତ୍ତ୍ୱାନି ଦିଶୋ ଦ୍ରୁମାଦୀନ୍ ।**
**ସରିତ୍ସମୁଦ୍ରାଂଶ୍ଚ ହରେଃ ଶରୀରଂ**
**ଯତ୍କିଞ୍ଚ ଭୂତଂ ପ୍ରଣମେଦନନ୍ୟଃ ॥**

(ଶ୍ରୀମଦ୍ଭା. ୧୧ । ୨ । ୪୧)

"ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଗ୍ରହ-ନକ୍ଷତ୍ର, ଜୀବଜନ୍ତୁ, ଦିଗବିଦିଗ, ବୃକ୍ଷ, ନଦୀ, ସମୁଦ୍ର ସବୁକିଛି ଭଗବାନଙ୍କର ହିଁ ଶରୀର ବୋଲି ଭାବି ଭକ୍ତ ସମସ୍ତଙ୍କୁ ଅନନ୍ୟଭାବରେ ପ୍ରଣାମ କରେ ।"

ଭଗବାନ ଅର୍ଜୁନଙ୍କୁ ଯେଉଁ ବିରାଟରୂପ ଦେଖାଇଥିଲେ, ତାହା ଦିବ୍ୟ (ଅଲୌକିକ) ଥିଲା—**'ନାନାବିଧାନି ଦିବ୍ୟାନି'** (ଗୀତା ୧୧ । ୫), **'ଅନେକଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧମ୍'** (ଗୀତା ୧୧ । ୧୦), **'ଦିବ୍ୟମାଲ୍ୟାମ୍ବରଧରଂ ଦିବ୍ୟଗନ୍ଧାନୁଲେପନମ୍'** (ଗୀତା ୧୧ । ୧୧), **'ବ୍ରହ୍ମାଣମୀଶଂ କମଳାସନସ୍ଥମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍'** (ଗୀତା ୧୧ । ୧୫) । ସେହି ଦିବ୍ୟ ବିରାଟରୂପକୁ ଭଗବାନ ତାଙ୍କ ଶରୀରରେ ହିଁ ଦେଖାଇଥିଲେ ।

ଭଗବାନଙ୍କର ଉକ୍ତି—**'ମମ ଦେହେ ଗୁଡାକେଶ'** (୧୧ । ୭)

ସଞ୍ଜୟଙ୍କର ଉକ୍ତି—**'ଅପଶ୍ୟଦ୍ଦେବଦେବସ୍ୟ ଶରୀରେ'** (୧୧ । ୧୩)

ଅର୍ଜୁନଙ୍କର ଉକ୍ତି—**'ପଶ୍ୟାମି ଦେବାଂସ୍ତବ ଦେବ ଦେହେ'** (୧୧ । ୧୫)

ଅତଏବ ଭଗବାନଙ୍କର ବିରାଟରୂପ ହୋଇଥିବାରୁ ପାଞ୍ଚଭୌତିକ

* ଗୀତାରେ 'ଲୋକ' ଶବ୍ଦ ଅନେକ ଅର୍ଥରେ ପ୍ରଯୁକ୍ତ ହୋଇଛି । ଏହା ଜାଣିବା ପାଇଁ ଗୀତାପ୍ରେସ୍‌ରୁ ପ୍ରକାଶିତ 'ଗୀତାଦର୍ପଣ' ଗ୍ରନ୍ଥରେ 'ଗୀତାର ଅନେକାର୍ଥ-ଶବ୍ଦକୋଷ' ଦ୍ରଷ୍ଟବ୍ୟ ।

ଜଗତ ମଧ୍ୟ ଅଲୌକିକ । ଭଗବାନ ତାଙ୍କର ବିଭୂତିଗୁଡ଼ିକୁ ଦିବ୍ୟ କହିଛନ୍ତି— **'ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ'** (୧୦ । ୧୯), **'ନାନ୍ତୋଽସ୍ତି ମମ ଦିବ୍ୟାନାଂ ବିଭୂତୀନାଂ ପରନ୍ତପ'** (୧୦ । ୪୦) । ଅର୍ଜୁନ ମଧ୍ୟ କହିଛନ୍ତି— **'ବକ୍ତୁମର୍ହସ୍ୟଶେଷେଣ ଦିବ୍ୟା ହ୍ୟାତ୍ମବିଭୂତୟଃ'** (୧୦ । ୧୬) । ମାତ୍ର ଜୀବକୁ ଅଜ୍ଞାନବଶତଃ ତା' ବୁଦ୍ଧିରେ ରାଗ-ଦ୍ୱେଷ ହେତୁ ଏହି ଜଗତ ଲୌକିକ ଦେଖାଯାଉଛି । ଜଗତ ମହାତ୍ମାଙ୍କ ଦୃଷ୍ଟିରେ ନାହିଁ କି ଭଗବାନଙ୍କ ଦୃଷ୍ଟିରେ ନାହିଁ, କେବଳ ଜୀବ ଦୃଷ୍ଟିରେ ଜଗତର ସତ୍ତା ରହିଛି । ମହାତ୍ମାଙ୍କ ଦୃଷ୍ଟିରେ ସବୁକିଛି ଭଗବାନ—**'ବାସୁଦେବଃ ସର୍ବମ୍'** (ଗୀତା ୭ । ୧୯), ଭଗବାନଙ୍କ ଦୃଷ୍ଟିରେ ସତ୍-ଅସତ୍ ସବୁକିଛି ସେ ନିଜେ—**'ସଦସଚ୍ଚାହମର୍ଜୁନ'** (ଗୀତା ୯ । ୧୯), ମାତ୍ର ଜୀବ ରାଗ-ଦ୍ୱେଷ କାରଣରୁ ଜଗତକୁ ନିଜ ବୁଦ୍ଧିରେ ଧରିରଖିଛି—**'ଯୟେଦଂ ଧାର୍ଯ୍ୟତେ ଜଗତ୍'** (ଗୀତା ୭ । ୫) ।

ଅଧିଦୈବ ଅର୍ଥାତ୍ ବ୍ରହ୍ମାଦି ସମସ୍ତ ଦେବତା ଅଲୌକିକ ଓ ଦିବ୍ୟ । ଅଧିଯଜ୍ଞ ଅର୍ଥାତ୍ ଅନ୍ତର୍ଯାମୀ ଭଗବାନ ସମସ୍ତଙ୍କ ହୃଦୟରେ ଥାଇ ମଧ୍ୟ ନିର୍ଲିପ୍ତ ରହୁଥିବାରୁ ଅଲୌକିକ ଅଟନ୍ତି—

**ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ ।**
**ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନ୍ନନ୍ୟୋ ଅଭିଚାକଶୀତି ॥**

(ମୁଣ୍ଡକ. ୩ । ୧ । ୧; ଶ୍ୱେତାଶ୍ୱତର. ୪ । ୬)

"ଏକସଙ୍ଗେ ରହୁଥିବା ତଥା ପରସ୍ପର ସଖାଭାବ ରହୁଥିବା ଦୁଇଟି ପକ୍ଷୀ—ଜୀବାତ୍ମା ଓ ପରମାତ୍ମା, ଏକମାତ୍ର ଶରୀରରୂପୀ ବୃକ୍ଷର ଆଶ୍ରିତ । ଦୁହିଙ୍କ ମଧ୍ୟରୁ ଜଣେ (ଜୀବାତ୍ମା) ସେହି ବୃକ୍ଷର ସୁଖଦୁଃଖରୂପକ କର୍ମଫଳର ସ୍ୱାଦ ଗ୍ରହଣ କରି ଉପଭୋଗ କରେ, ମାତ୍ର ଅନ୍ୟ ଜଣକ (ପରମାତ୍ମା) ନ ଖାଇ କେବଳ ଦେଖୁଥାଏ ।"

ସମଗ୍ରରୂପ ଜଣାଇବାର ଅଭିପ୍ରାୟ ଯେ ଜଡ଼-ଚେତନ, ସତ୍-ଅସତ୍ ଯାହାକିଛି ଅଛି, ସବୁ ସେଇ ଭଗବାନଙ୍କର ହିଁ ସ୍ୱରୂପ—**'ସଦସଚ୍ଚାହମର୍ଜୁନ'** (ଗୀତା ୯ । ୧୯) । ଏଥିପାଇଁ ଭଗବାନ ସମଗ୍ରରୂପ ବର୍ଣ୍ଣନାର ଆଦି ଓ ଅନ୍ତରେ **'ମାମ୍'** ପଦ ବ୍ୟବହାର କରିଛନ୍ତି—**'ମାମାଶ୍ରିତ୍ୟ'** (ଗୀତା ୭ । ୨୯) ଓ **'ମାଂ ତେ ବିଦୁଃ'** (ଗୀତା ୭ । ୩୦) । ସବୁକିଛି ଭଗବାନ—ଏହି ଭାବନାରେ ଯେଉଁମାନେ ଭଗବାନଙ୍କର ସମଗ୍ରରୂପକୁ ଜାଣିପାଆନ୍ତି, ସେମାନେ **'ଯୁକ୍ତଚେତା'**

ପଦବାଚ୍ୟ । ଏପରି ଯୁକ୍ତଚେତା ଭକ୍ତ ଅନ୍ତକାଳରେ ମନ ବିଚଳିତ ହେଲେ ବି ଯୋଗଭ୍ରଷ୍ଟ ହୁଅନ୍ତି ନାହିଁ, ବରଂ ଭଗବାନଙ୍କୁ ପ୍ରାପ୍ତ ହୁଅନ୍ତି—**'ପ୍ରୟାଣକାଲେଽପି ଚ ମାଂ ତେ ବିଦୁର୍ଯୁକ୍ତଚେତସଃ'** । ସେମାନଙ୍କ ଦୃଷ୍ଟିରେ ଯଦି ଭଗବାନଙ୍କ ବ୍ୟତୀତ ତିଳେମାତ୍ର ଅନ୍ୟ ସତ୍ତା ନାହିଁ, ତେବେ ମନ ବିଚଳିତ ହେବାର ପ୍ରଶ୍ନ ବି ଉଠୁ ନାହିଁ । ଅନ୍ୟ ସତ୍ତା ନ ଥିବାରୁ ସେମାନଙ୍କର ମନ ଯେଉଁଠିକୁ ଯିବ, ତାହା ମଧ୍ୟ ପରମାତ୍ମା, ପୁଣି ସେମାନଙ୍କର ମନ ବିଚଳିତ ହେବ କିପରି ଏବଂ ମନ ବିଚଳିତ ନ ହେଲେ ଯୋଗଭ୍ରଷ୍ଟ ହେବେ କେମିତି? ଯୋଗରୁ ମନ ବିଚଳିତ ହେଲେ ହିଁ ମନୁଷ୍ୟ ଯୋଗଭ୍ରଷ୍ଟ ହୁଏ—**'ଯୋଗାଚ୍ଚଳିତମାନସଃ'** (ଗୀତା ୬ । ୩୭) । ଏଣୁ ଭଗବାନ କହିଛନ୍ତି—

**ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।**
**ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ॥**

(ଗୀତା ୮ । ୧୪)

"ହେ ପାର୍ଥ ! ଯେଉଁ ଅନନ୍ୟଚିତ୍ତ ମନୁଷ୍ୟ ମୋତେ ନିତ୍ୟ ନିରନ୍ତର ସ୍ମରଣ କରେ, ସେହି ନିତ୍ୟଯୁକ୍ତ ଯୋଗୀ ପାଇଁ ମୁଁ ସୁଲଭ ।"

ଗୋଟିଏ ମାର୍ମିକ ବିଷୟ ଯେ ସାଧକ ଏକମାତ୍ର ଭଗବାନଙ୍କ ବ୍ୟତୀତ ଦ୍ୱିତୀୟ ସତ୍ତା ମାନୁଥିବା ପର୍ଯ୍ୟନ୍ତ ତା'ର ମନ ସର୍ବଥା ନିରୁଦ୍ଧ ହୋଇ ପାରିବ ନାହିଁ । ଦ୍ୱିତୀୟ ସତ୍ତାର ଧାରଣା ଥିବାପର୍ଯ୍ୟନ୍ତ ଆସକ୍ତି ସର୍ବଥା ନଷ୍ଟ ହୁଏ ନାହିଁ ଏବଂ ଆସକ୍ତି ସର୍ବଥା ନଷ୍ଟ ନ ହେଲେ ମନ ସର୍ବଥା ନିର୍ବିଷୟ ହୋଇପାରେ ନାହିଁ । ଆସକ୍ତି ଥିଲେ ମନ ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ନିରୁଦ୍ଧ ହୋଇପାରେ, ଯଦ୍ଦ୍ୱାରା ଅନେକ ଲୌକିକ ସିଦ୍ଧି ପ୍ରକଟିତ ହୁଏ, କିନ୍ତୁ ବାସ୍ତବିକ ତତ୍ତ୍ୱ ପ୍ରାପ୍ତ ହୁଏ ନାହିଁ । ଅନ୍ୟ ସତ୍ତା ଥାଇ ମନ ଯେଉଁ ନିରୁଦ୍ଧ ହୁଏ, ସେଥିରୁ ବ୍ୟୁତ୍‌ଥାନ ହୁଏ ଅର୍ଥାତ୍ ସମାଧି ଓ ବ୍ୟୁତ୍‌ଥାନ—ଏପରି ଦୁଇଟି ଅବସ୍ଥା ହୁଏ । ଅନ୍ୟ ସତ୍ତା ନ ରହିଲେ ଏପରି ଦୁଇଟି ଅବସ୍ଥା ହେବା ଆଦୌ ସମ୍ଭବ ନୁହେଁ । ଅନ୍ୟ ସତ୍ତା ନ ରହିବାରୁ ଭକ୍ତର ପ୍ରେମ ମଧ୍ୟ ଅନନ୍ୟ ହୋଇଥାଏ । ସୁତରାଂ ବ୍ୟବହାରିକ କ୍ଷେତ୍ରରେ ଭେଦ ନ ରଖିବା ଯେପରି ବିରାଟ ଭୁଲ୍, ସେହିପରି ତତ୍ତ୍ୱ (ଚିନ୍ମୟ ସତ୍ତା)ରେ ଭେଦ କରିବା ମଧ୍ୟ ବିରାଟ ଭୁଲ୍ ।

ଗୋସ୍ୱାମୀ ତୁଳସୀଦାସ ଲେଖିଛନ୍ତି—

**ଜଡ଼ ଚେତନ ଗୁନ ଦୋଷମୟ ବିସ୍ୱ କୀହ୍ନ କରତାର ।** (ମାନସ, ବାଲ. ୬)

ତାତ୍ପର୍ଯ୍ୟ ଏହି ଯେ ଜଡ଼ ଓ ଚେତନ ଉଭୟ ବ୍ରହ୍ମାଙ୍କ ସୃଷ୍ଟିର ଅନ୍ତର୍ଗତ ହୋଇଥିବାରୁ ଲୌକିକ। ଗୀତାରେ ମଧ୍ୟ ଭଗବାନ କହିଛନ୍ତି—

**ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ।**
**କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ॥**

(ଗୀତା ୧୫।୧୬)

"ଏହି ଲୋକରେ କ୍ଷର ଓ ଅକ୍ଷର ନାମରେ ଦୁଇ ପ୍ରକାର ପୁରୁଷ ଅଛନ୍ତି। ସକଳ ପ୍ରାଣୀଙ୍କର ଶରୀର କ୍ଷର (ନାଶବାନ୍) ଓ କୂଟସ୍ଥ ଜୀବାତ୍ମା ଅକ୍ଷର (ଅବିନାଶୀ) ନାମରେ କଥିତ।"

ଏହି ଦୃଷ୍ଟିରୁ କ୍ଷର ଓ ଅକ୍ଷର, ଶରୀର ଓ ଶରୀରୀ, ଦେହ ଓ ଦେହୀ, କ୍ଷେତ୍ର ଓ କ୍ଷେତ୍ରଜ୍ଞ—ଏ ସମସ୍ତେ ଲୌକିକ।

ଦୈବୀସମ୍ପତ୍ତି ମୁକ୍ତିପ୍ରଦାୟକ ଓ ଆସୁରୀସମ୍ପତ୍ତି ବନ୍ଧନକାରକ—**'ଦୈବୀ ସମ୍ପଦ୍ ବିମୋକ୍ଷାୟ ନିବନ୍ଧାୟାସୁରୀ ମତା'** (ଗୀତା ୧୬।୫)। ଉଭୟ ସମ୍ପତ୍ତିସମ୍ପନ୍ନ ପ୍ରାଣୀ ଲୌକିକ ଅଟନ୍ତି—**'ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ'** (ଗୀତା ୧୬।୬)। ଏଣୁ ମୋକ୍ଷ ଓ ବନ୍ଧନ ମଧ୍ୟ ଲୌକିକ।

**ନ ନିରୋଧୋ ନ ଚୋତ୍ପତ୍ତିର୍ନ ବଦ୍ଧୋ ନ ଚ ସାଧକଃ।**
**ନ ମୁମୁକ୍ଷୁର୍ନ ବୈ ମୁକ୍ତ ଇତ୍ୟେଷା ପରମାର୍ଥତା॥**

(ଆତ୍ମୋପନିଷଦ୍ ୩୧, ମାଣ୍ଡୂକ୍ୟକାରିକା ୨।୩୨, ତତ୍ତ୍ୱୋପଦେଶ ୮୧, ବିବେକଚୂଡ଼ାମଣି ୫୭୫)

"ପ୍ରଳୟ ନାହିଁ କି ଉତ୍ପତ୍ତି ନାହିଁ, ବଦ୍ଧ ନାହିଁ କି ସାଧକ ନାହିଁ, ମୁମୁକ୍ଷୁ ନାହିଁ କି ମୁକ୍ତ ନାହିଁ—ଏହା ହିଁ ପରମାର୍ଥତା ଅର୍ଥାତ୍ ବାସ୍ତବିକ ତତ୍ତ୍ୱ।"

ତାତ୍ପର୍ଯ୍ୟ ଏହି ଯେ ବନ୍ଧନ ଓ ମୋକ୍ଷ ଉଭୟ ସାପେକ୍ଷ ହୋଇଥିବାରୁ ଲୌକିକ। ନିରପେକ୍ଷ ତତ୍ତ୍ୱରେ ବନ୍ଧନ ନାହିଁ କି ମୋକ୍ଷ ନାହିଁ। ଅତଏବ ବାସ୍ତବ ତତ୍ତ୍ୱ ଅଲୌକିକ ଅଟେ। ଏଣୁ ପ୍ରେମୀଭକ୍ତ କହେ—

**ମୁକ୍ତିର ଇଚ୍ଛା କେବେହେଁ ନ କରେ ବ୍ୟାକୁଳ,**
**ନିତ୍ୟ ନବୀନ ବନ୍ଧନ ତବ ଶ୍ରୀମୁଖ ଦର୍ଶନ**
**ମୁକ୍ତି ତ ଲୋଟୁଛି ତୁମ ଚରଣ ତଳ।**

ଚେତନ ଓ ଜଡ଼, ଜୀବ ଓ ଜଗତ ବିଗ୍ରହର ବିଷୟ ହୋଇଥିବା

ହେତୁ 'ଜ୍ଞାନ' ଲୌକିକ ଅଟେ। ମାତ୍ର ଭଗବାନ ବିଗ୍ରହର ବିଷୟ ନୁହନ୍ତି*; ତେଣୁ 'ଭକ୍ତି' ଅଲୌକିକ। ଜ୍ଞାନମାର୍ଗରେ ଯେପର୍ଯ୍ୟନ୍ତ ବିବେକ ରହେ, ସେପର୍ଯ୍ୟନ୍ତ ଲୌକିକତା ରହେ। ଯେତେବେଳେ ବିବେକ ତତ୍ତ୍ୱଜ୍ଞାନରେ ପରିଣତ ହୋଇଯାଏ, ସେତେବେଳେ ଜ୍ଞାନୀଠାରେ ବି ଅଲୌକିକତା ଆସିଯାଏ। କାରଣ ଜ୍ଞାନ (ତତ୍ତ୍ୱଜ୍ଞାନ) ଅଜ୍ଞାନର ନାଶକ। ଅଜ୍ଞାନକୁ ନଷ୍ଟ କରି ଜ୍ଞାନ ଶାନ୍ତ ହୋଇଯାଏ ଓ ଜ୍ଞାନୀଠାରେ ଅଲୌକିକତା ଆସିଯାଏ। ଏହି କାରଣରୁ ଭକ୍ତିମାର୍ଗରେ ମୀରାବାଈଙ୍କ ଦେହ ଯେପରି ଚିନ୍ମୟ ହୋଇ ଲୀନ ହୋଇଯାଇଥିଲା, ଜ୍ଞାନମାର୍ଗରେ କବୀରଙ୍କର ଦେହ ମଧ୍ୟ ସେହିପରି ଚିନ୍ମୟ ହୋଇ ଲୀନ ହୋଇଯାଇଥିଲା।

ଅବତାରଲୀଳା ସମୟରେ ଭଗବାନ ଲୌକିକ ଭଳି ଦେଖାଯାଉଥିଲେ ମଧ୍ୟ ସର୍ବଦା ଅଲୌକିକ ରହିଥାନ୍ତି। ଲୋକରେ ଅବତାର ଗ୍ରହଣ କଲେ ମଧ୍ୟ ତାଙ୍କର ଅଲୌକିକତା ଯଥାବତ୍ ଅକ୍ଷୁଣ୍ଣ ରହିଥାଏ। ଭଗବାନ କହିଛନ୍ତି—

**ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍।**
**ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା ॥**

(ଗୀତା ୪।୬)

ଭଗବାନ ହିଁ ଜଗତରୂପରେ ପ୍ରକଟିତ ହୋଇଥିବାରୁ ଜଗତକୁ ଭଗବାନଙ୍କର ଆଦି ଅବତାର କୁହାଯାଏ—**'ଆଦ୍ୟୋଽବତାରଃ ପୁରୁଷଃ ପରସ୍ୟ'** (ଶ୍ରୀମଦ୍ଭା. ୨।୬।୪୧)। ରାମ, କୃଷ୍ଣ ପ୍ରଭୃତି ଅବତାର ପରି ଭଗବାନ ନିଜେ ଏହି ଜଗତରୂପରେ ମଧ୍ୟ ଅବତାର ଧାରଣ କରିଛନ୍ତି। ଏହାକୁ ଅବତାର କହିବାର କାରଣ ହେଲା, ଏଥିରେ ଭଗବାନ ଦୃଶ୍ୟରୂପରେ ପ୍ରତୀୟମାନ ହୁଅନ୍ତି।

ଅବତାରଲୀଳା ସମୟରେ ଭଗବାନ ଅଲୌକିକ ରହିଥିଲେ ମଧ୍ୟ ରାଗ-ଦ୍ୱେଷ କାରଣରୁ ଅଜ୍ଞାନୀମାନଙ୍କୁ ଲୌକିକ ପରି ଦେଖାଯାଆନ୍ତି—

**ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟଃ।** (ଗୀତା ୭।୨୪)

---

* ଭଗବାନ ଶ୍ରଦ୍ଧା ଓ ବିଶ୍ୱାସର ବିଷୟ। ଏଣୁ ଆସ୍ତିକ ଓ ନାସ୍ତିକ ଭେଦରେ ଦୁଇ ପ୍ରକାର ଦର୍ଶନ ଦେଖିବାକୁ ମିଳେ। ନ୍ୟାୟଦର୍ଶନ ଓ ବୈଶେଷିକଦର୍ଶନ ହେଉଛି ଲୌକିକ। ଯୋଗଦର୍ଶନ ଓ ସାଂଖ୍ୟଦର୍ଶନ ହେଉଛି ଲୌକିକ ଓ ଅଲୌକିକର ସମାହାର। ପୂର୍ବମୀମାଂସା ଓ ଉତ୍ତରମୀମାଂସା କେବଳ ଅଲୌକିକ ଅଟେ।

**ମୂଢୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ ।**

(ଗୀତା ୭ । ୨୫)

**ଅବଜାନନ୍ତି ମାଂ ମୂଢା ମାନୁଷୀଂ ତନୁମାଶ୍ରିତମ୍ ।**

(ଗୀତା ୯ । ୧୧)

ବସ୍ତୁତଃ ଲୌକିକ ଓ ଅଲୌକିକର ପ୍ରଭେଦ ରାଗ-ଦ୍ୱେଷ କାରଣରୁ ଉତ୍ପନ୍ନ । ରାଗ-ଦ୍ୱେଷ ନ ଥିଲେ ସବୁକିଛି ଅଲୌକିକ (ଚିନ୍ମୟ)—**'ବାସୁଦେବଃ ସର୍ବମ୍'** । କାରଣ ଲୌକିକର ସ୍ୱତନ୍ତ୍ର ସତ୍ତା ନାହିଁ । ରାଗ-ଦ୍ୱେଷ ହେତୁ ଲୌକିକର ସତ୍ତା ଓ ମହତ୍ତ୍ୱ ପ୍ରତୀୟମାନ ହେଉଛି । ରାଗ-ଦ୍ୱେଷ ହେତୁ ହିଁ ଜୀବ ଭଗବତ୍‌ସ୍ୱରୂପ ସଂସାରକୁ ଲୌକିକ କରିଦେଲା ଓ ନିଜେ ମଧ୍ୟ ଲୌକିକ ହୋଇଗଲା! ଏଥିପାଇଁ ଭଗବାନ ରାଗ-ଦ୍ୱେଷକୁ ସାଧକର ପରମ ଶତ୍ରୁ ବୋଲି କହିଛନ୍ତି—

**ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ ।**
**ତୟୋର୍ନ ବଶମାଗଚ୍ଛେତ୍ତୌ ହ୍ୟସ୍ୟ ପରିପନ୍ଥିନୌ ॥**

(ଗୀତା ୩ । ୩୪)

"ଇନ୍ଦ୍ରିୟର ଇନ୍ଦ୍ରିୟ ଅର୍ଥରେ ଅର୍ଥାତ୍ ପ୍ରତ୍ୟେକ ଇନ୍ଦ୍ରିୟର ନିଜ ନିଜ ବିଷୟରେ ମନୁଷ୍ୟର ରାଗ ଓ ଦ୍ୱେଷ ବ୍ୟବସ୍ଥାନୁସାରେ (ଅନୁକୂଳତା ଓ ପ୍ରତିକୂଳତାକୁ ନେଇ) ଅବସ୍ଥିତ । ମନୁଷ୍ୟ ସେ ଦୁଇଟିର ବଶବର୍ତ୍ତୀ ହେବା ଅନୁଚିତ; କାରଣ ସେ ଦୁଇଟି ମନୁଷ୍ୟର (ପାରମାର୍ଥିକ ମାର୍ଗରେ ବିଘ୍ନପ୍ରଦାନକାରୀ) ଶତ୍ରୁ ।"

**କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ ।**
**ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍ ॥**

(ଗୀତା ୩ । ୩୭)

"ରଜୋଗୁଣରୁ ଉତ୍ପନ୍ନ ଏହି କାମ ହିଁ କ୍ରୋଧ । ଏହା ବହୁତ ଖାଏ ଓ ମହାପାପୀ ଅଟେ । ଏ ବିଷୟରେ ତୁମେ ଏହାକୁ ଶତ୍ରୁ ବୋଲି ଜାଣ ।"

'କ୍ଷର' (ନାଶବାନ୍)କୁ ମୁଖ୍ୟ ମାନିଲେ ଜୀବ ଅସୁର ହୋଇଯାଏ, 'ଅକ୍ଷର' (ଅବିନାଶୀ)କୁ ମୁଖ୍ୟ ମାନିଲେ ଜୀବ ଜ୍ଞାନୀ ହୋଇଯାଏ ଓ 'ପୁରୁଷୋତ୍ତମ' (ସମଗ୍ର ଭଗବାନ)ଙ୍କୁ ମୁଖ୍ୟ ମାନିଲେ ଜୀବ ପ୍ରେମୀ ହୋଇଯାଏ । ପ୍ରେମୀ ହୋଇଗଲେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ପ୍ରେମର ଆଦାନପ୍ରଦାନ ଚାଲେ । ଶିଶୁର କ୍ରିୟା ମାଆକୁ ଓ ମାଆର କ୍ରିୟା ଶିଶୁକୁ ଯେପରି ଆନନ୍ଦ

ପ୍ରଦାନ କରେ, ସେହିପରି ଭକ୍ତର କ୍ରିୟା ଭଗବାନଙ୍କୁ ଓ ଭଗବାନଙ୍କର କ୍ରିୟା ଭକ୍ତକୁ ଆନନ୍ଦ ପ୍ରଦାନ କରେ, ଉଭୟଙ୍କ ମଧ୍ୟରେ ପ୍ରେମରସ ବୃଦ୍ଧି କରେ। ପ୍ରେମୀ ଓ ପ୍ରେମାସ୍ପଦଙ୍କର ଏହି ଅଭିନ୍ନତାକୁ ଗୋସ୍ୱାମୀ ତୁଳସୀଦାସ ଅତି ସୁନ୍ଦର ରୀତିରେ ପ୍ରକାଶ କରିଛନ୍ତି—

**ଗୀରା ଅରଥ ଜଲ ବୀଚି ସମ କହିଅତ ଭିନ୍ନ ନ ଭିନ୍ନ।**

(ମାନସ, ବାଲ. ୧୮)

ଅର୍ଥାତ୍ ବାଣୀ ଓ ତାହାର ଅର୍ଥ ଏବଂ ଜଳ ଓ ତାହାର ଲହରୀ ଯେପରି ପୃଥକ୍ ପୃଥକ୍ ଦେଖାଯାଉଥିଲେ ମଧ୍ୟ ଅଭିନ୍ନ, ସେହିପରି ପ୍ରେମୀ ଓ ପ୍ରେମାସ୍ପଦ ଅଭିନ୍ନ। ଏଠାରେ ଗୋସ୍ୱାମୀଜୀ ପ୍ରଥମେ ସ୍ତ୍ରୀଲିଙ୍ଗବାଚକ 'ଗୀରା' ଶବ୍ଦ ବ୍ୟବହାର କରି ପରେ ପୁଂଲିଙ୍ଗବାଚକ 'ଅରଥ' ଶବ୍ଦ ବ୍ୟବହାର କରିଛନ୍ତି ଏବଂ ଏହା ପରେ ପ୍ରଥମେ ପୁଂଲିଙ୍ଗବାଚକ 'ଜଲ'* ଶବ୍ଦ ବ୍ୟବହାର କରି ପରେ ସ୍ତ୍ରୀଲିଙ୍ଗବାଚକ 'ବୀଚି' ଶବ୍ଦ ବ୍ୟବହାର କରିଛନ୍ତି। ଏଥିରୁ ଏହି ଅଭିପ୍ରାୟ ଜଣାପଡୁଛି ଯେ ସ୍ତ୍ରୀବାଚକ 'ସୀତା' ଓ ପୁରୁଷବାଚକ 'ରାମ'—ଉଭୟେ ଅଭିନ୍ନ। ତେଣୁ ପ୍ରଥମେ 'ସୀତା' (ସୀତାରାମ) କୁହ ବା ପ୍ରଥମେ 'ରାମ' (ରାମସୀତା) କୁହ—ଉଭୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ।ψ ପ୍ରେମରେ କୌଣସି ପ୍ରଭେଦ ରହେ ନାହିଁ। ପ୍ରେମରେ ଭକ୍ତ ଓ ଭଗବାନ ସମାନ ଅଟନ୍ତି—

**ତସ୍ମିଂସ୍ତଜ୍ଜନେ ଭେଦାଭାବାତ୍।**

(ନାରଦଭକ୍ତି. ୪୧)

''ଭଗବାନ ଓ ତାଙ୍କ ଭକ୍ତଙ୍କ ମଧ୍ୟରେ ଭେଦ ନାହିଁ।''



---

* ସଂସ୍କୃତ ଓ ଓଡ଼ିଆ ଭାଷା ଅନୁସାରେ 'ଜଳ' ଶବ୍ଦ କ୍ଲୀବଲିଙ୍ଗ, କିନ୍ତୁ ହିନ୍ଦୀ ଭାଷାରେ 'ଜଲ' ଶବ୍ଦକୁ ପୁଂଲିଙ୍ଗ ଧରାଯାଏ। ହିନ୍ଦୀ ଭାଷାରେ କ୍ଲୀବଲିଙ୍ଗ ନାହିଁ।

ψ ଭରତ ପ୍ରେମରେ ବିଭୋର ହୋଇ 'ରାମସିୟ-ରାମସିୟ' ଉଚ୍ଚାରଣ କରନ୍ତି—

ଭରତ ତୀସରେ ପହର କହଁ କୀନ୍ହ ପ୍ରବେସୁ ପ୍ରୟାଗ।
କହତ ରାମ ସିୟ ରାମ ସିୟ ଉମଗି ଉମଗି ଅନୁରାଗ॥

(ମାନସ, ଅଯୋଧ୍ୟା. ୨୦୩)

# ୮. ଅଲୌକିକ ସାଧନା—ଭକ୍ତି

ସଂସାରରୁ ସମ୍ବନ୍ଧ ଛିନ୍ନ କରି ପରମାତ୍ମାଙ୍କୁ ପାଇବାରେ ତିନୋଟି ସାଧନା ମୁଖ୍ୟ—କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ। ଭାଗବତରେ ଭଗବାନ କହିଛନ୍ତି—

**ଯୋଗାସ୍ତ୍ରୟୋ ମୟା ପ୍ରୋକ୍ତା ନୃଣାଂ ଶ୍ରେୟୋବିଧିତ୍ସୟା ।**
**ଜ୍ଞାନଂ କର୍ମ ଚ ଭକ୍ତିଶ୍ଚ ନୋପାୟୋଽନ୍ୟୋଽସ୍ତି କୁତ୍ରଚିତ୍ ॥**

(ଶ୍ରୀମଭା. ୧୧ । ୨୦ । ୬)

"ଆତ୍ମକଲ୍ୟାଣ ଚାହୁଁଥିବା ମନୁଷ୍ୟଙ୍କ ପାଇଁ ମୁଁ ତିନୋଟି ଯୋଗମାର୍ଗ (ଭଗବଦ୍‌ଗୀତାରେ) କହିଛି—ଜ୍ଞାନଯୋଗ, କର୍ମଯୋଗ ଓ ଭକ୍ତିଯୋଗ*। ଏ ତିନୋଟି ବ୍ୟତୀତ ଆତ୍ମକଲ୍ୟାଣର ଅନ୍ୟ କୌଣସି ମାର୍ଗ ନାହିଁ।

କର୍ମଯୋଗ ଓ ଜ୍ଞାନଯୋଗରେ ସଂସାରରୁ ସମ୍ବନ୍ଧ ଛିନ୍ନ କରିବା ମୁଖ୍ୟ ଏବଂ ଭକ୍ତିଯୋଗରେ ଭଗବାନଙ୍କ ସହ ସମ୍ବନ୍ଧ ଯୋଡ଼ିବା ମୁଖ୍ୟ। ଏଥିପାଇଁ କର୍ମଯୋଗ ଓ ଜ୍ଞାନଯୋଗ 'ଲୌକିକ ସାଧନା' ନାମରେ ଓ ଭକ୍ତିଯୋଗ 'ଅଲୌକିକ ସାଧନା' ନାମରେ ଖ୍ୟାତ। ଲୌକିକ ସାଧନା 'ବିବେକମାର୍ଗ' ଏବଂ ଅଲୌକିକ ସାଧନା 'ବିଶ୍ୱାସମାର୍ଗ' ଅଟେ। ବିବେକମାର୍ଗରେ ବିବେକର ପ୍ରାଧାନ୍ୟ ଓ ଶ୍ରଦ୍ଧାବିଶ୍ୱାସର ଗୌଣତା ଥାଏ ଏବଂ ବିଶ୍ୱାସମାର୍ଗରେ ଶ୍ରଦ୍ଧାବିଶ୍ୱାସର ପ୍ରାଧାନ୍ୟ ଓ ବିବେକର ଗୌଣତା ଥାଏ। ସଂସାରରୁ ସମ୍ବନ୍ଧ ଛିନ୍ନ କରିବାରେ ବିବେକ ପ୍ରୟୋଜନ ଏବଂ ଭଗବାନଙ୍କ ସହ ସମ୍ବନ୍ଧ ସ୍ଥାପନ କରିବାରେ ବିଶ୍ୱାସ ପ୍ରୟୋଜନ। ସାଧକର ପ୍ରାୟ ଭୁଲ୍ ହୁଏ ଯେ ସେ ବିବେକରେ ବିଶ୍ୱାସକୁ ଓ ବିଶ୍ୱାସରେ ବିବେକକୁ ମିଶାଏ ଅର୍ଥାତ୍ ବିବେକମାର୍ଗରେ ବିଶ୍ୱାସକୁ ପ୍ରାଧାନ୍ୟ ଦିଏ ଓ ବିଶ୍ୱାସମାର୍ଗରେ ବିବେକକୁ ପ୍ରାଧାନ୍ୟ ଦିଏ। ଏହି କାରଣରୁ ତା'ର ସାଧନା ଶୀଘ୍ର ଫଳବତୀ ହୁଏ ନାହିଁ। 'ସଂସାର ସହ ମୋର ସମ୍ବନ୍ଧ ଅଛି କି ନାହିଁ'—ଏହା ଜାଣିବାକୁ ବିଶ୍ୱାସର ଆବଶ୍ୟକତା ନାହିଁ,

---

* ଗୀତାରେ ଭଗବାନ ଜ୍ଞାନଯୋଗ, କର୍ମଯୋଗ ଓ ଭକ୍ତିଯୋଗ—ଏହି କ୍ରମରେ ଉପଦେଶ ଦେଇଛନ୍ତି।

ବରଂ ବିବେକ ଖଟାଇବା ଆବଶ୍ୟକ। 'ଭଗବାନ ଅଛନ୍ତି କି ନାହାନ୍ତି', 'ସେ ମୋର କି ମୋର ନୁହନ୍ତି'—ଏ ବିଷୟରେ ବିବେକ ଖଟାଇବା ଉଚିତ ନୁହେଁ, ବରଂ ବିଶ୍ୱାସ କରିବା ଉଚିତ। କାରଣ ଜଗତ ଓ ଜୀବ ବିଗ୍ଚରର ବିଷୟ ଏବଂ ଭଗବାନ କେବଳ ବିଶ୍ୱାସ (ମାନିବା)ର ବିଷୟ। ବିବେକ (ବିଗ୍ଚର) ସେହିଠାରେ ଲାଗୁ ହୁଏ, ଯେଉଁଠି ସନ୍ଦେହ ହୁଏ ଏବଂ ସନ୍ଦେହ ଅଳ୍ପଜ୍ଞାନରେ ଅଥବା ଅପୂର୍ଣ୍ଣ ଜ୍ଞାନରେ ହିଁ ଉତ୍ପନ୍ନ ହୋଇଥାଏ। ତାତ୍ପର୍ଯ୍ୟ ହେଲା, ଯାହା ବିଷୟରେ ଆମର ଆଂଶିକ ଜ୍ଞାନ ଅଛି, ଅର୍ଥାତ୍ କିଛି ଜାଣିଛୁ ଓ କିଛି ଜାଣି ନାହୁଁ, ସେହିଠାରେ ବିବେକ ପ୍ରୟୋଜନ। ମାତ୍ର ଯାହା ବିଷୟରେ ଆମେ କିଛି ହେଲେ ଜାଣି ନାହୁଁ, ସେଠାରେ କେବଳ ବିଶ୍ୱାସ ହିଁ ଉପଯୋଗୀ ହୁଏ। ବିଶ୍ୱାସରେ ସନ୍ଦେହର ସ୍ଥାନ ନାହିଁ। ବିଶ୍ୱାସ କରିବା ଓ ନ କରିବାରେ ସମସ୍ତେ ସ୍ୱାଧୀନ।*

ଜ୍ଞାନୀ ସଂସାର ସହିତ ମାନିଥିବା ସମ୍ବନ୍ଧକୁ ପରିତ୍ୟାଗ କରେ ଏବଂ ଭକ୍ତ କେବଳ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ନିଜର ସମ୍ବନ୍ଧ ସ୍ୱୀକାର କରେ ନାହିଁ। ପ୍ରକାରାନ୍ତରରେ କହିଲେ ଜ୍ଞାନୀ 'ମୁଁ' ଓ 'ମୋର'କୁ ତ୍ୟାଗ କରିଥାଏ ଏବଂ ଭକ୍ତ 'ତୁ' ଓ 'ତୋର'କୁ ସ୍ୱୀକାର କରିଥାଏ। ଏଥିପାଇଁ ଜ୍ଞାନୀ ପଦାର୍ଥ ଓ କ୍ରିୟାକୁ ତ୍ୟାଗ କରେ ଏବଂ ଭକ୍ତ ପଦାର୍ଥ ଓ କ୍ରିୟାକୁ ଭଗବାନଙ୍କୁ ଅର୍ପଣ କରେ (ଗୀତା ୯। ୨୬,୨୭)। ଭକ୍ତ ସେଗୁଡ଼ିକୁ ନିଜର ନ ଭାବି ଭଗବାନଙ୍କର ଓ ଭଗବତ୍‌ସ୍ୱରୂପ ମନେକରେ। ତ୍ୟାଗ ଅପେକ୍ଷା ଅର୍ପଣ ସହଜ। ସାଧାରଣତଃ ଯେଉଁ ବସ୍ତୁ ପ୍ରତି ମନୁଷ୍ୟର ସତ୍ୟତା ଓ ମହତ୍ତ୍ୱ ଧାରଣା ରହିଛି, ତାହାକୁ ମିଥ୍ୟା ଭାବି ତ୍ୟାଗ କରିଦେବା ଅପେକ୍ଷା କୌଣସି ବ୍ୟକ୍ତିକୁ ଅର୍ପଣ କରିଦେବା ଓ ତାହାର ସେବାରେ ବିନିଯୋଗ କରିଦେବା ସହଜ ହୋଇଥାଏ। ପୁଣି ଯିଏ ପରମ ପ୍ରେମାସ୍ପଦ ଓ ଶ୍ରଦ୍ଧାସ୍ପଦ ଭଗବାନ, ତାଙ୍କୁ ଅର୍ପଣ କରିବା ଯେ

---

* ବେଦ, ପୁରାଣ ଆଦି ଗ୍ରନ୍ଥରୁ ପଢ଼ିଲେ ବା ଭଗବଦ୍ ଭକ୍ତମାନଙ୍କ ଠାରୁ ଶୁଣିଲେ ଅଥବା କୌଣସି ଦୁଃଖ ପଡ଼ିଲେ ଭଗବାନଙ୍କ ଉପରେ ବିଶ୍ୱାସ ହୋଇଯାଏ। ଯେତେବେଳେ କୌଣସି ଭୟଙ୍କର ବିପଦ ଆସେ ଓ ସେଥିରୁ ରକ୍ଷା ପାଇବା ପାଇଁ କୌଣସି ଉପାୟ ଦେଖାଯାଏ ନାହିଁ, କେହି ସହାୟକ ଦେଖାଯାଏ ନାହିଁ ଏବଂ ସେଥିରୁ ରକ୍ଷା ପାଇବାର ସମସ୍ତ ପ୍ରଯତ୍ନ ବିଫଳ ହୁଏ, ସେତେବେଳେ ମନୁଷ୍ୟକୁ ବାଧ୍ୟ ହୋଇ ଭଗବାନଙ୍କ ଉପରେ ବିଶ୍ୱାସ କରିବାକୁ ପଡ଼େ! ଭଗବାନଙ୍କୁ ଡାକିବାକୁ ପଡ଼େ!

ସହଜ ହେବ, ଏହା କହିବା ବାହୁଲ୍ୟମାତ୍ର । କାରଣ ସମସ୍ତ ବସ୍ତୁ (ସମଗ୍ର ସଂସାର) ମୂଳତଃ ଭଗବାନଙ୍କର । ସେଗୁଡ଼ିକୁ ଭଗବାନଙ୍କୁ ଅର୍ପଣ କରିବା ଅର୍ଥ କେବଳ ନିଜର ଭ୍ରମ ଦୂର କରିବା । ସଂସାରକୁ ଭଗବାନଙ୍କର ମାନିବାମାତ୍ରେ ସଂସାରଠାରୁ ସମ୍ବନ୍ଧ ତୁଟିଯାଏ । ସଂସାରରୁ ସମ୍ବନ୍ଧ ତୁଟାଇବା ପାଇଁ ଭକ୍ତରେ ବିବେକ ଆବଶ୍ୟକ ହୁଏ ନାହିଁ । ତାତ୍ପର୍ଯ୍ୟ ହେଲା, ଭକ୍ତ ସଂସାରରୁ ସମ୍ବନ୍ଧ ତୁଟାଏ ନାହିଁ, ବରଂ ତାହାକୁ ଭଗବାନଙ୍କର ଓ ଭଗବତ୍‌ସ୍ୱରୂପ ମାନିନିଏ ।

ବିବେକ ପାରମାର୍ଥିକ ବିଷୟରେ ବି କାମ କରେ ଓ ଲୌକିକ ବିଷୟରେ ବି କାମ କରେ । ଲୌକିକ ବିଷୟରେ ବିବେକର ଉପଯୋଗ କରି ମନୁଷ୍ୟ ବଡ଼ ବୈଜ୍ଞାନିକ, ବିଚାରପତି, ଓକିଲ ପ୍ରଭୃତି ହୋଇପାରେ, ନାନାପ୍ରକାରର ଆବିଷ୍କାର କରିପାରେ, ମାତ୍ର ତତ୍ତ୍ୱପ୍ରାପ୍ତି କରିବା ଅସମ୍ଭବ । କାରଣ ଆସକ୍ତି ରହୁଥିବାରୁ ଲୌକିକ ବିଷୟର ବିବେକ ଭୋଗ ଓ ସଂଗ୍ରହର ମହତ୍ତ୍ୱ ବୃଦ୍ଧି କରାଇ ସଂସାରରେ ଆବଦ୍ଧ କରାଏ ଏବଂ ପାପରେ ପ୍ରବୃତ୍ତ କରାଇ ପତନ କରାଏ । ତାତ୍ପର୍ଯ୍ୟ ହେଲା ଯେ ଅନ୍ତରରେ ସଂସାରର ସତ୍ତା ଓ ମହତ୍ତ୍ୱ ଥିଲେ ବିବେକ ବହୁତ ମାରାତ୍ମକ ବା ଅନର୍ଥର ହେତୁ ହୁଏ । ପ୍ରକୃତରେ ଲୌକିକ ବିଷୟର ବିବେକ 'ଅବିବେକ' ହିଁ ଅଟେ । ପାରମାର୍ଥିକ ବିଷୟକ ବିବେକ ଅର୍ଥାତ୍ ସତ୍-ଅସତ୍ ସମ୍ବନ୍ଧୀୟ ବିବେକ ହିଁ ବାସ୍ତବିକ ବିବେକ* । ସତ୍-ଅସତ୍ ସମ୍ବନ୍ଧରେ ବିବେକ ହେଲେ ପାରମାର୍ଥିକ ଓ ଲୌକିକ ଉଭୟ କାର୍ଯ୍ୟ ଠିକ୍‌ଭାବେ ହୁଏ; କାରଣ ବିବେକୀ ମନୁଷ୍ୟର ବୁଦ୍ଧି ପ୍ରତ୍ୟେକ ବିଷୟରେ ପ୍ରବିଷ୍ଟ ହୋଇଥାଏ ।

ପାରମାର୍ଥିକ ବିବେକସମ୍ପନ୍ନ ମନୁଷ୍ୟ ଲୌକିକ ବିଷୟକୁ ମଧ୍ୟ ଠିକ୍‌ଭାବେ ଉପଯୋଗ କରିପାରେ । କିନ୍ତୁ କେବଳ ଲୌକିକ ବିବେକସମ୍ପନ୍ନ ମନୁଷ୍ୟ ଲୌକିକ ବିଷୟର ଉପଯୋଗ ମଧ୍ୟ ଠିକ୍‌ଭାବେ କରିପାରେ ନାହିଁ—

**ଉପଭୋକ୍ତୁଂ ନ ଶକ୍ନୋତି ଶ୍ରିୟଂ ପ୍ରାପ୍ୟାପି ମାନବଃ ।**
**ଆକଣ୍ଠଜଳମଗ୍ନୋଽପି ଶ୍ୱା ଲେଢୀତି ସ୍ୱଜିହ୍ୱୟା ॥**

---

* ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।
ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ॥

(ଗୀତା ୧୮ । ୩୦)

''ହେ ପୃଥାନନ୍ଦନ ! ଯେଉଁ ବୁଦ୍ଧି ପ୍ରବୃତ୍ତି ଓ ନିବୃତ୍ତିକୁ, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ, ଭୟ ଓ ଅଭୟକୁ ତଥା ବନ୍ଧନ ଓ ମୋକ୍ଷକୁ ଜାଣେ, ସେହି ବୁଦ୍ଧି ସାତ୍ତ୍ୱିକୀ ଅଟେ ।''

"ପ୍ରାରବ୍ଧବଶତଃ ଧନସମ୍ପତ୍ତି ଲାଭ କରି ମଧ୍ୟ ଅବିବେକୀ ମନୁଷ୍ୟ ତାହାକୁ ଠିକ୍‌ଭାବେ ଉପଭୋଗ କରିପାରେ ନାହିଁ; ଯେପରି—ବେକେପାଣିରେ ବୁଡ଼ିଥିଲେ ବି କୁକୁର ଜିଭରେ ଗ୍ଧୁଗ୍ଧୁ କରି ପାଣି ପିଏ (ତାକୁ ଠିକ୍‌ଭାବେ ପିଇବା ଆସେ ନାହିଁ) ।"

ବାସ୍ତବିକ ବିବେକ ବୈରାଗ୍ୟଜନକ । ଯଦି ବୈରାଗ୍ୟ ନାହିଁ, ତେବେ ତାହା ବାସ୍ତବିକ (ଅସଲି) ବିବେକ ନୁହେଁ । 'ମୋର ଅସତ୍ ସହିତ ସମ୍ବନ୍ଧ ଆଦୌ ନାହିଁ'—ଏହି ବିବେକରୁ ବୈରାଗ୍ୟ ଅବଶ୍ୟ ଉତ୍ପନ୍ନ ହୁଏ । ବିବେକରେ ସତ୍ ଓ ଅସତ୍ ଉଭୟ ଥାଏ । ତେଣୁ ବୈରାଗ୍ୟ ଜାତ ହେଲେ ମଧ୍ୟ ଅନ୍ତଃକରଣରେ ଅସତ୍‌ର ଅତି ସୂକ୍ଷ୍ମ ସତ୍ତା ରହୁଥିବାରୁ ସେଥିପ୍ରତି ସୂକ୍ଷ୍ମ ବାସନା ରହିଯାଏ । ସେହି ବାସନା ପ୍ରେମାଭକ୍ତିରେ ହିଁ ଦୂର ହୁଏ—

**ପ୍ରେମ ଭଗତି ଜଲ ବିନୁ ରଘୁରାଈ । ଅଭିଅଂତର ମଲ କବହୁଁ ନ ଜାଈ ॥**

(ମାନସ, ଉତ୍ତର ୪୯ । ୩)

ସୂକ୍ଷ୍ମ ବାସନାକୁ ସର୍ବଥା ନଷ୍ଟ କରିବାର ସାମର୍ଥ୍ୟ ପ୍ରେମରେ ହିଁ ନିହିତ । ପ୍ରେମରେ ବିନା ବିଗ୍ରହରେ ଆପେ ଆପେ ଅସତ୍‌ର ଆକର୍ଷଣ ନଷ୍ଟ ହୁଏ; କାରଣ ସତ୍-ତତ୍ତ୍ୱ ପ୍ରତି ପ୍ରେମ ହେଲେ ଅସତ୍ ଆଡ଼କୁ ଆଦୌ ଦୃଷ୍ଟି ଯାଏ ନାହିଁ, ବ୍ୟକ୍ତି ଅସତ୍‌ଠାରୁ ସର୍ବଥା ପରାଙ୍ମୁଖ ହୋଇଯାଏ—**ସପନେହୁଁ ଆନ ପୁରୁଷ ଜଗ ନାହୀଁ** (ମାନସ, ଅରଣ୍ୟ. ୫ । ୬) । ତାତ୍ପର୍ଯ୍ୟ ହେଲା ପ୍ରେମରେ ଏକମାତ୍ର ଭଗବାନଙ୍କ ବ୍ୟତୀତ ଦ୍ୱିତୀୟ ସତ୍ତା ନ ଥାଏ । ଅତଏବ ବିବେକ ତଟସ୍ଥ ରହୁଥିବାସ୍ଥଳେ ପ୍ରେମ ଭଗବାନଙ୍କ ସହ ସଂଲଗ୍ନ କରାଏ । ଲୋଭରେ ଧନ ଆଡ଼କୁ ଆକର୍ଷିତ କରାଇବାର ଶକ୍ତି ଥିବାପରି ପ୍ରେମରେ ଭଗବାନଙ୍କ ଆଡ଼କୁ ଆକର୍ଷିତ କରାଇବାର ଶକ୍ତି ନିହିତ । ଏହି ଶକ୍ତି ବିବେକରେ ନାହିଁ । ହଁ, ତୀବ୍ର ଜିଜ୍ଞାସା ଥିଲେ ବିବେକରେ ମଧ୍ୟ ସତ୍-ତତ୍ତ୍ୱର ପ୍ରାଧାନ୍ୟ ଆସିଯାଏ । ସତ୍-ତତ୍ତ୍ୱର ପ୍ରାଧାନ୍ୟ ଆସିଗଲେ ସେହି ବିବେକ କେବଳ ବୈରାଗ୍ୟଜନକ ହୋଇ ରହେ ନାହିଁ, ବରଂ ତତ୍ତ୍ୱବୋଧ କରାଇଦିଏ ।

ବିବେକମାର୍ଗରେ ସତ୍ ଓ ଅସତ୍—ଉଭୟର ଧାରଣା ରହୁଥିବାରୁ ଅସତ୍‌ର ଅତି ସୂକ୍ଷ୍ମ ସତ୍ତା ଅର୍ଥାତ୍ ଅତି ସୂକ୍ଷ୍ମ ଅହମ୍ ବହୁଦୂର ପର୍ଯ୍ୟନ୍ତ ରହେ । ଏହି ସୂକ୍ଷ୍ମ ଅହମ୍ ମୁକ୍ତ ହେବାପରେ ମଧ୍ୟ ରହେ । ସୂକ୍ଷ୍ମ ଅହମ୍ ଜନ୍ମମରଣ ପ୍ରଦାୟକ ନ

ହେଲେ ସୁଦ୍ଧା ପରମାତ୍ମାଙ୍କ ସହିତ ଅଭିନ୍ନ ହେବାରେ ବାଧା ସୃଷ୍ଟି କରେ। ଏଇଥିପାଇଁ ବିବେକମାର୍ଗରେ ଜ୍ଞାନୀମାନଙ୍କର ଅଥବା ଦାର୍ଶନିକମାନଙ୍କର ମୁକ୍ତି ତ ହୋଇଥାଏ, ମାତ୍ର ପରମାତ୍ମାଙ୍କ ସଙ୍ଗେ ଅଭିନ୍ନତା ଅର୍ଥାତ୍ ପ୍ରେମ ହୋଇପାରେ ନାହିଁ। ଏହି ସୂକ୍ଷ୍ମ ଅହମ୍ କାରଣରୁ ହିଁ ଦାର୍ଶନିକମାନଙ୍କ ମଧ୍ୟରେ ଓ ସେମାନଙ୍କ ଦର୍ଶନ ମଧ୍ୟରେ ମତଭେଦ ରହେ। ବିଶ୍ୱାସମାର୍ଗରେ ଭକ୍ତ ଆରମ୍ଭରୁ ହିଁ ଏକମାତ୍ର ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାରି ସ୍ୱତନ୍ତ୍ର ସତ୍ତା ସ୍ୱୀକାର କରେ ନାହିଁ। ଏଣୁ ସେ ପରମାତ୍ମାଙ୍କ ସହ ଅଭିନ୍ନ ହୋଇଯାଏ। ପରମାତ୍ମାଙ୍କ ସହ ଅଭିନ୍ନ ହୋଇଗଲେ ସୂକ୍ଷ୍ମ ଅହମ୍ ରହେ ନାହିଁ ଏବଂ ସେଥିରୁ ଉତ୍ପନ୍ନ ହେଉଥିବା ସମସ୍ତ ମତଭେଦ ସମାପ୍ତ ହୋଇଯାଏ। ଏହି ଦୃଷ୍ଟିରୁ ଜ୍ଞାନର ଐକ୍ୟଠାରୁ ପ୍ରେମର ଐକ୍ୟ ଶ୍ରେଷ୍ଠ। ଜ୍ଞାନରେ ତ ଭେଦ ରହିପାରେ, ମାତ୍ର ପ୍ରେମରେ କୌଣସି ଭେଦ ରହେ ନାହିଁ।

ବିବେକମାର୍ଗରେ ବିବେକପୂର୍ବକ କରାଯାଉଥିବା ସାଧନା ଦୁଇ ପ୍ରକାରର— ବିଧ୍ୟାତ୍ମକ ଓ ନିଷେଧାତ୍ମକ। ବିଧ୍ୟାତ୍ମକ ସାଧନାରେ ସୂକ୍ଷ୍ମ ଅହମ୍ ଜୀବିତ ରହିଥାଏ। କାରଣ ଏଥିରେ ଅଭ୍ୟାସର ପ୍ରାଧାନ୍ୟ ଥିବାରୁ ଅସତ୍‌ର ଆଶ୍ରୟ ରହିଥାଏ। ସାଧକ ଭାବେ ଯେ, ମୋତେ ସତ୍‌ରେ ସ୍ଥିତ ହେବାକୁ ପଡ଼ିବ। ଏହି ଭାବନା ହେତୁ ଅସତ୍‌ର ସଙ୍ଗ ଦୂରେଇ ଗଲେ ମଧ୍ୟ ସତ୍‌ରେ ସ୍ଥିତ ହେଉଥିବା 'ବ୍ୟକ୍ତିତ୍ୱ' ରହିଯାଏ—ଏହା ହିଁ ସୂକ୍ଷ୍ମ ଅହମ୍। ଏହି ସୂକ୍ଷ୍ମ ଅହଂଭାବ ଦାର୍ଶନିକମାନଙ୍କ ମଧ୍ୟରେ ଏକତ୍ୱ ସଂଘଟିତ କରାଇଦିଏ ନାହିଁ। ସେମାନଙ୍କ ମଧ୍ୟରେ ମତଭେଦ ରହୁଥିବାରୁ ସେମାନଙ୍କ ଦର୍ଶନ ମଧ୍ୟରେ ବି ମତଭେଦ ରହେ। ସେମାନେ ନିଜ ନିଜ ମତ ଅନୁସାରେ ପରମାତ୍ମାଙ୍କୁ ମାନନ୍ତି, ଯାହା କି ସମଗ୍ର ନ ହୋଇ ସମଗ୍ରର ଅଂଶ (ଆଂଶିକ) ହୋଇଥାଏ। ସେମାନେ ପରମାତ୍ମାଙ୍କର ସେହି ସମଗ୍ରରୂପକୁ ଜାଣନ୍ତି ନାହିଁ, ଯାହା ସମସ୍ତ ମତଭେଦର ଉର୍ଦ୍ଧ୍ୱରେ।

ଦାର୍ଶନିକମାନଙ୍କ ଦୃଷ୍ଟିରେ ସେମାନଙ୍କର ନିଜ ନିଜ ମତ ସାଧ୍ୟ ଅଟେ, ଯାହା କି ବାସ୍ତବରେ ସାଧ୍ୟ ନୁହେଁ, ବରଂ ସାଧନତତ୍ତ୍ୱ*। ପ୍ରକୃତ ସାଧ୍ୟ ସମଗ୍ର ପରମାତ୍ମାଙ୍କ ଠାରେ କୌଣସି ମତଭେଦର ସ୍ଥାନ ନାହିଁ। ସୂକ୍ଷ୍ମ ଅହମ୍ ରହିବାରୁ ଦାର୍ଶନିକମାନଙ୍କୁ ନିଜର ମତ (ମାର୍ଗ) ଶ୍ରେଷ୍ଠ ଦେଖାଯାଏ।

* ସାଧନ ଭିନ୍ନ ଭିନ୍ନ ହୋଇଥାଏ, ମାତ୍ର ସାଧନତତ୍ତ୍ୱ ଏକ ଅଟେ।

ଅନ୍ୟର ମତ ଏତେ ଶ୍ରେଷ୍ଠ ଓ ଲାଭଦାୟକ ଜଣାପଡ଼େ ନାହିଁ ଏବଂ ସେମାନଙ୍କର ଏହି ଧାରଣା ରହିଥାଏ ଯେ ଜ୍ଞାନ ବିନା ମୁକ୍ତି ଅସମ୍ଭବ ବା ନିଷ୍କାମ କର୍ମ ବିନା ମୁକ୍ତି ଅସମ୍ଭବ ଅଥବା ଭକ୍ତି ବିନା ମୁକ୍ତି ଅସମ୍ଭବ। ଏଣୁ ସେମାନେ ନିଜ ମତର ମଣ୍ଡନ (ପ୍ରଶଂସା) ଓ ଅନ୍ୟ ମତର ଖଣ୍ଡନ କରନ୍ତି। ଅନ୍ୟମାନଙ୍କ ମତ ଖଣ୍ଡନ କରିବାରେ ପ୍ରକୃତରେ ସେମାନଙ୍କର ମନ୍ଦ ଉଦ୍ଦେଶ୍ୟ ନ ଥାଏ, ବରଂ ସେମାନେ ଅନ୍ୟମାନଙ୍କର ହିତ ଉଦ୍ଦେଶ୍ୟରେ ଏହା କରିଥାନ୍ତି। ସେମାନଙ୍କର ଉଦ୍ଦେଶ୍ୟ ଯେ ଲୋକେ ବିପରୀତଗାମୀ ନ ହୋଇ ନିଜକୁ ଉଦ୍ଧାର କରନ୍ତୁ। ଲୋକମାନଙ୍କର କଲ୍ୟାଣ ଉଦ୍ଦେଶ୍ୟରେ ସେମାନେ ନିଜ ମତ(ମାର୍ଗ)ର ପ୍ରଚାର କରନ୍ତି; କାରଣ ସେମାନେ ନିଜେ ସେହି ମତ ଅନୁସାରେ ଅନୁଭବ କରି ନିଃସନ୍ଦେହ ହୋଇଛନ୍ତି ଓ ସେମାନଙ୍କୁ ଶାନ୍ତି ମିଳିଛି। ତେଣୁ ସେମାନଙ୍କର ଏପରି କହିବା ଯଥାର୍ଥ। ମାତ୍ର ସେହି ଦାର୍ଶନିକମାନଙ୍କର ଅନୁଗାମୀମାନଙ୍କ ମଧ୍ୟରେ ପ୍ରାୟ ଦେହାଭିମାନ ହେତୁ ନିଜ ନିଜ ମତର ଆଗ୍ରହ (ପକ୍ଷସମର୍ଥନ ଭାବନା) ରହେ। ଆଗ୍ରହ ରହିବାରୁ ସେମାନେ ନିଜ ମତର ଅନୁସରଣ କରିବା ପରିବର୍ତ୍ତେ ଅନ୍ୟର ମତକୁ ଖଣ୍ଡନ କରନ୍ତି ଓ ଅନ୍ୟର ମତକୁ ମାନୁଥିବା ଲୋକମାନଙ୍କ ପ୍ରତି ଦ୍ୱେଷଭାବ ପୋଷଣ କରନ୍ତି। ଅନ୍ୟର ମତକୁ ମାନିବା ଦ୍ୱାରା ଯେ କଲ୍ୟାଣ ହୋଇପାରିବ, ଏହା ସେମାନଙ୍କ ମନକୁ ପାଏ ନାହିଁ। ସେମାନେ ଅନ୍ୟର ମତକୁ ଭ୍ରମପୂର୍ଣ୍ଣ ମନେ କରନ୍ତି। ସେମାନଙ୍କର ଧାରଣା ଯେ ଅନ୍ୟମାନଙ୍କୁ ଆମ ମତକୁ ଆସିବାକୁ ପଡ଼ିବ, ତା'ହେଲେ ଯାଇ ସେମାନଙ୍କର କଲ୍ୟାଣ ହେବ। ସେମାନଙ୍କର ଅନ୍ୟ ମତାବଲମ୍ବୀମାନଙ୍କ ପ୍ରତି ଯେଉଁ ଦ୍ୱେଷ ଜନ୍ମେ, ତାହା ସାଧାରଣ ସାଂସାରିକ ରାଗ-ଦ୍ୱେଷଠାରୁ ମଧ୍ୟ ଅଧିକ ଦୃଢ଼ ଓ ଭୟଙ୍କର ହୋଇଥାଏ। ଦ୍ୱେଷ ହେତୁ ସେମାନେ ଅନ୍ୟର ମତକୁ ସର୍ବଥା ନିଶ୍ଚିହ୍ନ କରିଦେବାକୁ ମଧ୍ୟ ଚାହାନ୍ତି! ଏଭଳି ଲଢ଼ାଇ ଦାର୍ଶନିକମାନଙ୍କ ମଧ୍ୟରେ ହୁଏ ନାହିଁ, ବରଂ ସେମାନଙ୍କ ଅନୁଗାମୀମାନଙ୍କ ମଧ୍ୟରେ ହୁଏ।

ନିଜ ସାଧନା ପ୍ରତି କୃତଜ୍ଞ ରହିବା ଓ ମହତ୍ତ୍ୱଭାବ ପୋଷଣ କରିବା ଦୋଷାବହ ନୁହେଁ, ମାତ୍ର ଅନ୍ୟର ମତକୁ ଖଣ୍ଡନ କରିବା ଦୋଷାବହ। ଏଣୁ ସାଧକ ଅନ୍ୟର ମତକୁ ଖଣ୍ଡନ ନ କରି ନିଜର ମତ ଅନୁସାରେ ଆଗ୍ରହଶୂନ୍ୟ

ଭାବରେ ପରିଚାଳିତ ହେବା ଉଚିତ। ସେ ଅନ୍ୟର ମତକୁ **ଖଣ୍ଡନ** କରିବା ପରିବର୍ତ୍ତେ ବରଂ ଏତିକି କହି ପାରିବ ଯେ 'ମୁଁ ଅନ୍ୟର ପ୍ରଣାଳୀ ବିଷୟରେ ଜାଣି ନାହିଁ'। ନିଜର ଅଜ୍ଞତା ପ୍ରକାଶ କରିବାରେ ଦୋଷ ନାହିଁ, କିନ୍ତୁ ନିଜର ଗୁଣ ବଖାଣିବା ଦୋଷ। କାରଣ ନିଜର ଅଜ୍ଞାତା (ଅପୂର୍ଣ୍ଣତା) ପ୍ରକାଶ କଲେ ଅନ୍ୟଠାରେ ପୂର୍ଣ୍ଣତା ଦେଖାଯାଏ ଏବଂ ନିଜର ଗୁଣ ପ୍ରକାଶ କଲେ ଅନ୍ୟଠାରେ ଦୋଷ ଦେଖାଯାଏ। ଏଣୁ ନିଜକୁ କଦାପି ସିଦ୍ଧ ନ ଭାବି, ସର୍ବଦା ସାଧକ ଭାବିବା ଉଚିତ। ନିଜକୁ ସିଦ୍ଧ ଓ ପୂର୍ଣ୍ଣ ଭାବିଲେ ଉନ୍ନତିର ପଥ ଅବରୁଦ୍ଧ ହୋଇଯାଏ ଓ ଶେଷରେ ନିଜକୁ ପ୍ରତାରିତ ହେବାକୁ ପଡ଼େ। ନିଜଠାରେ କୌଣସି ଦୋଷ ଥିଲେ ତାହା ସେହିପରି ଅମାର୍ଜିତ ରହିଯାଏ।

**ପ୍ରଶ୍ନ**—କଣ ମୁକ୍ତ ହେବା ପରେ ମଧ୍ୟ ସୂକ୍ଷ୍ମ ଅହମ୍ ରହେ?

**ଉତ୍ତର**—ହଁ, ମୁକ୍ତ ହେବା ପରେ ମଧ୍ୟ ଜ୍ଞାନୀ (ଦାର୍ଶନିକ) ଠାରେ ସୂକ୍ଷ୍ମ ଅହମ୍ ରହେ, ଯଦ୍ଦ୍ୱାରା ଦାର୍ଶନିକମାନଙ୍କର ପରସ୍ପର ମଧ୍ୟରେ ପାର୍ଥକ୍ୟ, ଭିନ୍ନତା ବା ଭେଦ ରହେ। ଏହି ସୂକ୍ଷ୍ମ ଅହମ୍ ପ୍ରକୃତରେ ଅହଙ୍କାରର ସଂସ୍କାର; ହେଲେ ଏହା ଜନ୍ମମରଣର କାରଣ ହୁଏ ନାହିଁ। ଗୁଣର ସଙ୍ଗ ହିଁ ଜନ୍ମମରଣର କାରଣ—**'କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସୁ'** (ଗୀତା ୧୩।୨୧)। ମାର୍ଗର ସଙ୍ଗ ଜନ୍ମମରଣର କାରଣ ହୁଏ ନାହିଁ। ମାର୍ଗର ସଙ୍ଗ ହେଲା—ଯେଉଁ ମାର୍ଗରେ ସିଦ୍ଧି (ମୁକ୍ତି) ମିଳିଛି, ସେହି ମାର୍ଗର ସଂସ୍କାର, ଯାହା କି 'ସୂକ୍ଷ୍ମ ଅହମ୍' ବୋଲାଏ। ସୂକ୍ଷ୍ମ ଅହମ୍‌ରେ 'ସ୍ୱୟଂ' (ସ୍ୱରୂପ) ସଂସାରର ସମ୍ମୁଖ ନ ହୋଇ ପରମାତ୍ମତତ୍ତ୍ୱର ସମ୍ମୁଖ ରହେ। ଏହି ସୂକ୍ଷ୍ମ ଅହମ୍ ଜ୍ଞାନର ଏକତ୍ୱରେ ରହେ, ପ୍ରେମର ଏକତ୍ୱରେ ନୁହେଁ। କାରଣ ଭକ୍ତର ନିଜର ନିଷ୍ଠା ନ ଥାଏ, ସେ ଭଗବନ୍ନିଷ୍ଠ ହୋଇଥାଏ; ମାତ୍ର ଜ୍ଞାନୀର ନିଜର ନିଷ୍ଠା ଥାଏ। ଭକ୍ତିରେ ଅହଂଭାବ ପରିବର୍ତ୍ତିତ ହୋଇ ଭଗବାନଙ୍କ ଠାରେ ଲୀନ ହୋଇଯାଏ; ସେଥିରେ ଅହମ୍‌ର ସଂସ୍କାର ରହେ ନାହିଁ। ମାତ୍ର ଜ୍ଞାନରେ ଅହଂଭାବକୁ ନଷ୍ଟ କରିବା ଦ୍ୱାରା ଅତ୍ୟନ୍ତ ସୂକ୍ଷ୍ମ ଅହମ୍ ରହିଯାଏ। ହଁ, ଭୂମିକା (ସ୍ଥିତି) ଉଚ୍ଚତର ହେଲେ ଜ୍ଞାନୀର ମଧ୍ୟ ସେହି ଅତ୍ୟନ୍ତ ସୂକ୍ଷ୍ମ ଅହମ୍ ନଷ୍ଟ ହୋଇଯାଏ।

ଭେଦ ଜ୍ଞାନରେ ରହେ, ପ୍ରେମରେ ନୁହେଁ। ପ୍ରେମରେ ସମଗ୍ର ପରମାତ୍ମାଙ୍କ

ପ୍ରାପ୍ତି ହୁଏ; କାରଣ ସମଗ୍ରତା (**'ବାସୁଦେବଃ ସର୍ବମ୍'**) ପ୍ରାପ୍ତିରେ ପ୍ରେମ କାରଣ ଅଟେ, ଜ୍ଞାନ ନୁହେଁ। ଗୋଟିଏ ବିଚିତ୍ର କଥା ହେଲା—ଜ୍ଞାନମାର୍ଗରେ ହେଉଥିବା ମୁକ୍ତି ମଧ୍ୟ ପ୍ରେମରେ ହିଁ ସମ୍ପନ୍ନ ହୁଏ। କାରଣ ନିଜ ସ୍ୱରୂପ (ସତ୍ତା) ପ୍ରତି ପ୍ରେମ ବା ଆକର୍ଷଣ ନ ହେଲେ ସ୍ୱରୂପରେ ସ୍ଥିତି ହୁଏ ନାହିଁ। ଜ୍ଞାନୀର ନିଜ ସ୍ୱରୂପ ପ୍ରତି ଯେଉଁ ପ୍ରେମ ହୁଏ, ସେହି ପ୍ରେମ ତାକୁ ମୁକ୍ତ କରିଦେବ, କିନ୍ତୁ ସମଗ୍ରତାର ପ୍ରାପ୍ତି ଯେ କରାଇଦେବ, ଏପରି କୌଣସି ନିଶ୍ଚିତତା ନାହିଁ। କାରଣ ସତ୍ତା ପ୍ରତି ଏହି ପ୍ରେମ ସାଂସାରିକ ଆସକ୍ତି ପରି ଜନ୍ମମରଣପ୍ରଦାୟକ ଆଦୌ ହେଉ ନ ଥିଲେ ମଧ୍ୟ ସବୁ ମତକୁ ସମାନ ଆଦର ଦେବାରେ ପ୍ରତିବନ୍ଧକ ହୁଏ। ପ୍ରକୃତରେ ସାଧନରତ ଓ ଅସତ୍‌ରୁ ବିମୁଖ ହୋଇ ସତ୍‌ର ସମ୍ମୁଖ ହେଉଥିବା ସମସ୍ତ ସାଧକ ଆଦର ପାଇବାର ଯୋଗ୍ୟ। ସ୍ଥୂଳ ଦୃଷ୍ଟିରେ ମଧ୍ୟ ଦେଖିଲେ ଜଣାଯାଏ, ଭକ୍ତ ସମସ୍ତଙ୍କ ସଙ୍ଗେ ଏକ ହୋଇପାରୁଥିବା ସ୍ଥଳେ ଜ୍ଞାନୀ ସମସ୍ତଙ୍କ ସଙ୍ଗେ ଏକ ହୋଇପାରେ ନାହିଁ। କାରଣ ଜ୍ଞାନୀଠାରେ ଆରମ୍ଭରୁ ଅଭିମାନ ଥାଏ ଏବଂ ଭକ୍ତଠାରେ ଆରମ୍ଭରୁ ନମ୍ରତା ଓ ଦୀନତା ସ୍ଥାନ ପାଇଥାଏ। ଅବଶ୍ୟ ଏ କଥା ଭିନ୍ନ ଯେ, ଭକ୍ତର ଅଭିମାନ ଥିଲେ ସେ ମଧ୍ୟ ସମସ୍ତଙ୍କ ସଙ୍ଗେ ଏକ ହୋଇପାରିବ ନାହିଁ। ଯେତେବେଳେ ଜ୍ଞାନୀ ନ ରହି କେବଳ ଜ୍ଞାନ ରହିବ, ପ୍ରେମୀ ନ ରହି କେବଳ ପ୍ରେମ ରହିବ, ସେତେବେଳେ ଯାଇ ଅଭିମାନ ନଷ୍ଟ ହେବ।

ଜ୍ଞାନରେ ଅଖଣ୍ଡ ଆନନ୍ଦ ମିଳେ ଓ ଭକ୍ତିରେ ଅନନ୍ତ ଆନନ୍ଦ ମିଳେ। ଅଖଣ୍ଡ ଆନନ୍ଦରେ ଜ୍ଞାନୀ ଏକୁଟିଆ ହୋଇଯାଏ, ସେଥିପାଇଁ ଅଖଣ୍ଡ ଆନନ୍ଦରେ ତାକୁ ତୃପ୍ତି ମିଳେ ନାହିଁ—**'ଏକାକୀ ନ ରମତେ'**। ଅଖଣ୍ଡ ଆନନ୍ଦରୁ ଅରୁଚି ହେଲେ ତା' ହୃଦୟରେ ଅନନ୍ତ ଆନନ୍ଦ ଅର୍ଥାତ୍ ପ୍ରତିକ୍ଷଣ ବର୍ଦ୍ଧମାନ ପ୍ରେମର ପିପାସା (ପ୍ରେମପ୍ରାପ୍ତିର ଲାଳସା) ଜାଗ୍ରତ ହୁଏ।

ଜୀବନ୍ମୁକ୍ତିର ଆନନ୍ଦ ମଧ୍ୟ ଭୋଗ ଅଟେ। ଏହି ଭୋଗକୁ ଛାଡ଼ିବା ପରେ ହିଁ ପ୍ରେମପ୍ରାପ୍ତି ହୁଏ। ଜୀବନ୍ମୁକ୍ତିର ଆନନ୍ଦ ନିବୃତ୍ତିଜନିତ ଆନନ୍ଦ ଏବଂ ପ୍ରେମର ଆନନ୍ଦ ପ୍ରାପ୍ତିଜନିତ ଆନନ୍ଦ। ପ୍ରେମୀକୁ ମୁକ୍ତି ମଧ୍ୟ ନୀରସ ଲାଗେ। ଭଗବାନ ମଧ୍ୟ ପ୍ରେମ ପାଇଁ ଲାଳାୟିତ ରହନ୍ତି। ସେ ଜ୍ଞାନ ପାଇଁ ଲାଳାୟିତ ନୁହନ୍ତି, ସେ ତ ଜ୍ଞାନର ସ୍ୱରୂପ—**'ସଚ୍ଚିଦ୍‌ସୁଖୈକବପୁଷଃ'**, ***'ଚିଦାନନ୍ଦମୟ ଦେହ ତୁମ୍ହାରୀ'*** (ମାନସ, ଅଯୋଧ୍ୟା. ୨।୧୨୭।୩)।

ପ୍ରକୃତ ଅଦ୍ୱୈତ ପ୍ରେମରେ ହିଁ ନିହିତ । ପ୍ରେମରେ ଏକମାତ୍ର ଭଗବାନଙ୍କ ବ୍ୟତୀତ ଅନ୍ୟର ସତ୍ତା ଆଦୌ ନାହିଁ । ପ୍ରେମରେ ପ୍ରେମୀ ଓ ପ୍ରେମାସ୍ପଦ ଏକ ହୋଇ ମଧ୍ୟ ଦୁଇ ହୋଇଥାନ୍ତି ଏବଂ ଦୁଇ ହୋଇ ମଧ୍ୟ ଏକ ହୋଇଥାନ୍ତି । ପ୍ରେମୀଠାରେ ଅନ୍ୟ ଭାବ (ଦ୍ୱିତୀୟ ସତ୍ତା) ସମ୍ବନ୍ଧରେ ସ୍ଫୁରଣ ବି ହୁଏ ନାହିଁ । ଅନ୍ୟ ଆଡ଼କୁ ପ୍ରେମୀର ଦୃଷ୍ଟି କଦାପି ଯାଇ ନାହିଁ, ଯାଏ ନାହିଁ, ଯିବ ନାହିଁ କିଂବା ଯାଇ ପାରିବ ନାହିଁ; କାରଣ ପ୍ରେମରେ ଅନ୍ୟର ଅତ୍ୟନ୍ତ ଅଭାବ ଘଟିଥାଏ । ପ୍ରେମୀକୁ ସର୍ବତ୍ର ତା'ର ପ୍ରେମାସ୍ପଦ ହିଁ ଦୃଷ୍ଟିଗୋଚର ହୁଏ— ***'ଜିତ ଦେଖୌଁ ତିତ ସ୍ୟାମମୟୀ ହୈ'*** । ଏଣୁ ପ୍ରେମର ସ୍ୱରୂପ ଅନିର୍ବଚନୀୟ ବୋଲି କଥିତ—

**ଅନିର୍ବଚନୀୟଂ ପ୍ରେମସ୍ୱରୂପମ୍ । ମୂକାସ୍ୱାଦନବତ୍ ।**

(ନାରଦଭକ୍ତିସୂତ୍ର ୫୧,୫୨)

ଅନ୍ୟର ସତ୍ତା ଥିବା ପର୍ଯ୍ୟନ୍ତ ତାହା ସାଧକ-ପ୍ରେମ ଅଟେ, ସାଧ୍ୟ-ପ୍ରେମ (ପରମପ୍ରେମ ବା ପରାଭକ୍ତି) ନୁହେଁ । ଏଣୁ ଜ୍ଞାନର 'ଖ୍ୟାତି' ଅନିର୍ବଚନୀୟ ଏବଂ ପ୍ରେମର 'ସ୍ୱରୂପ' ଅନିର୍ବଚନୀୟ । ତାତ୍ପର୍ଯ୍ୟ ଏହି ଯେ ଜ୍ଞାନରେ ତ ଅନ୍ୟକୁ ନିଷେଧ କରାଯାଏ, ମାତ୍ର ପ୍ରେମରେ ଅନ୍ୟର ସତ୍ତା ବି ନ ଥାଏ । ପ୍ରେମରେ ସମଗ୍ର ପରମାତ୍ମା ମିଳନ୍ତି । ଏଣୁ ପ୍ରେମୀର କାହା ସହିତ ଶତ୍ରୁତା ବା ବିରୋଧିତା ନ ଥାଏ । ପ୍ରେମୀ ଦୃଷ୍ଟିରେ ସମସ୍ତେ ସମଗ୍ର ପରମାତ୍ମାଙ୍କର ଅଙ୍ଗ ହୋଇଥିବାରୁ ତା'ର ପ୍ରଭୁ ଅଟନ୍ତି; ପୁଣି କିଏ, କାହା ସହିତ ଓ କାହିଁକି ଶତ୍ରୁତା କରିବ— ***'ନିଜ ପ୍ରଭୁମୟ ଦେଖହିଁ ଜଗତ କେହି ସନ କରହିଁ ବିରୋଧ?***

କେହି ରାମଙ୍କର ପ୍ରେମୀ ତ କେହି କୃଷ୍ଣଙ୍କର ପ୍ରେମୀ ଏବଂ ଆଉ କେହି ଶିବଙ୍କର ପ୍ରେମୀ । ଏମାନଙ୍କ ମଧ୍ୟରେ ଏକତ୍ୱ ସମ୍ଭବ । ମାତ୍ର ସମସ୍ତ ଜ୍ଞାନୀ ପରସ୍ପର ସହିତ ଏକ ହୋଇ ପାରିବେ ନାହିଁ । ଯଦି ପ୍ରେମୀ ଓ ଜ୍ଞାନୀ ପରସ୍ପର ଭେଟ ହୁଅନ୍ତି, ତେବେ ପ୍ରେମୀ ଜ୍ଞାନୀକୁ ଯେତେ ଆଦର ଦେବ, ଜ୍ଞାନୀ ପ୍ରେମୀକୁ ସେତେ ଆଦର ଦେଇ ପାରିବ ନାହିଁ । ଏଥିପାଇଁ ଭକ୍ତର ଲକ୍ଷଣରେ କୁହାଯାଇଛି– ***'ସବହି ମାନପ୍ରଦ ଆପୁ ଅମାନୀ'*** (ମାନସ, ଉତ୍ତର, ୩୮ । ୨) । ରାମଚରିତମାନସର ଆରମ୍ଭରେ ଗୋସ୍ୱାମୀ ତୁଳସୀଦାସ ସଜ୍ଜନଙ୍କ ସହିତ ଦୁଷ୍ଟଙ୍କର ମଧ୍ୟ ବନ୍ଦନା କରିଛନ୍ତି ଏବଂ ହୃଦୟରେ ସହିତ କରିଛନ୍ତି— ***'ବନ୍ଦୁଁ***

*ବଂଦି ଖଲ ଗନ ସତିଭାଏଁ'* (ମାନସ, ବାଲ. ୪ । ୧) । ଏହା ଭକ୍ତ ହିଁ କରିପାରେ, ଜ୍ଞାନୀ ନୁହେଁ ! ଯଦ୍ୟପି ଜ୍ଞାନୀର କାହାରି ସହିତ କଦାପି ତିଳେମାତ୍ର ଶତ୍ରୁତା ନ ଥାଏ, ତଥାପି ତା'ଠାରେ ଉଦାସୀନତା ଓ ତଟସ୍ଥତା ଦେଖାଯାଏ । ବିବେକମାର୍ଗ (ଜ୍ଞାନ)ରେ ବୈରାଗ୍ୟର ପ୍ରାଧାନ୍ୟ ଥାଏ ଏବଂ ବୈରାଗ୍ୟ ଶୁଷ୍କ ଅଟେ । ଏହି କାରଣରୁ ଜ୍ଞାନୀର ହୃଦୟରେ କଠୋରତା ନ ଥିଲେ ମଧ୍ୟ ବୈରାଗ୍ୟ ଓ ଉଦାସୀନତା ହେତୁ ବାହାରକୁ କଠୋରତା ଜଣାପଡ଼େ ।

ଗୀତାରେ କର୍ମଯୋଗୀର ଲକ୍ଷଣ ବର୍ଣ୍ଣିତ (୨ । ୫୫—୭୨; ୬ । ୭—୯), ଜ୍ଞାନୀର ଲକ୍ଷଣ ମଧ୍ୟ ବର୍ଣ୍ଣିତ (୧୪ । ୨୨—୨୫) ଏବଂ ଭକ୍ତର ଲକ୍ଷଣ ମଧ୍ୟ ବର୍ଣ୍ଣିତ (୧୨ । ୧୩—୧୯); କିନ୍ତୁ କେବଳ ଭକ୍ତର ଲକ୍ଷଣରେ ହିଁ ଭଗବାନ କହିଛନ୍ତି—

**'ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।'**

(୧୨ । ୧୩)

"ଭକ୍ତ ସବୁ ପ୍ରାଣୀଙ୍କ ପ୍ରତି ଦ୍ୱେଷଶୂନ୍ୟ, ସମସ୍ତଙ୍କର ମିତ୍ର (ପ୍ରେମୀ) ଏବଂ ଦୟାଳୁ ।"

—ଏହି ଲକ୍ଷଣ **(ମୈତ୍ରଃ କରୁଣଃ)** କର୍ମଯୋଗୀ ପାଇଁ ବା ଜ୍ଞାନୀ ପାଇଁ କୁହାଯାଇ ନାହିଁ, କେବଳ ଭକ୍ତର ଲକ୍ଷଣ ବର୍ଣ୍ଣନାରେ କୁହାଯାଇଛି ।

ଭକ୍ତଠାରେ ଜ୍ଞାନ ଓ ବୈରାଗ୍ୟ ଆପେ ଆପେ ଆସିଯାଏ, ଆଣିବାକୁ ପଡ଼େ ନାହିଁ* । କାରଣ ଜ୍ଞାନ ଓ ବୈରାଗ୍ୟ ଭକ୍ତିର ଦୁଇଟି ପୁଅ । ମାଆ

---

* ଭକ୍ତିଃ ପରେଶାନୁଭବୋ ବିରକ୍ତିରନ୍ୟତ୍ର ଚୈଷ ତ୍ରିକ ଏକକାଳଃ ।
ପ୍ରପଦ୍ୟମାନସ୍ୟ ଯଥାଶ୍ନତଃ ସ୍ୟୁସ୍ତୁଷ୍ଟିଃ ପୁଷ୍ଟିଃ କ୍ଷୁଦପାୟୋଽନୁଘାସମ୍ ॥
ଇତ୍ୟଚ୍ୟୁତାଙ୍ଘ୍ରିଂ ଭଜତୋଽନୁବୃତ୍ତ୍ୟା ଭକ୍ତିର୍ବିରକ୍ତିର୍ଭଗବତ୍ପ୍ରବୋଧଃ ।
ଭବନ୍ତି ବୈ ଭାଗବତସ୍ୟ ରାଜଂସ୍ତତଃ ପରାଂ ଶାନ୍ତିମୁପୈତି ସାକ୍ଷାତ୍ ॥

(ଶ୍ରୀମଦ୍ଭା. ୧୧ । ୨ । ୪୨,୪୩)

"ଯେପରି ଭୋଜନ କରୁଥିବା ବ୍ୟକ୍ତିର ପ୍ରତ୍ୟେକ ଗ୍ରାସ ସହିତ ତୁଷ୍ଟି, ପୁଷ୍ଟି ଓ କ୍ଷୁଧାନିବୃତ୍ତି ହୋଇଚାଲିଥାଏ, ସେହିପରି ଭଗବାନଙ୍କର ଶରଣାପନ୍ନ ହୋଇ ଭଜନ କରୁଥିବା ବ୍ୟକ୍ତିକୁ ଭଗବାନଙ୍କ ପ୍ରତି ପ୍ରେମ, ପ୍ରେମାସ୍ପଦ ପ୍ରଭୁଙ୍କ ସ୍ୱରୂପର ଅନୁଭବ ଓ ପ୍ରଭୁଙ୍କ ବ୍ୟତୀତ ଅନ୍ୟ ସବୁଥିରୁ ବୈରାଗ୍ୟ—ଏ ତିନୋଟିର ପ୍ରାପ୍ତି ପ୍ରତିକ୍ଷଣ ଏକସଙ୍ଗେ ହୋଇଚାଲିଥାଏ । ରାଜନ୍ ! ଏହିରୂପେ ଯେ ପ୍ରତିକ୍ଷଣ ପ୍ରତ୍ୟେକ ବୃତ୍ତି ଦ୍ୱାରା ଭଗବାନଙ୍କ

ଯେଉଁଆଡ଼େ ଯିବ ପୁଅମାନେ ମଧ୍ୟ ସେଇଆଡ଼େ ଯିବେ! ଏଥିରେ ଏକ ମାର୍ମିକ କଥା ହେଲା—ଭକ୍ତଠାରେ ଯେଉଁ ଜ୍ଞାନ ଓ ବୈରାଗ୍ୟ ଆସେ, ତାହା ଜ୍ଞାନୀଠାରେ ଆସୁଥିବା ଜ୍ଞାନ ଓ ବୈରାଗ୍ୟଠାରୁ ମଧ୍ୟ ଉତ୍କୃଷ୍ଟ । ଯଥା—ଜ୍ଞାନମାର୍ଗରେ ତ ନିର୍ଗୁଣ ବ୍ରହ୍ମର ଜ୍ଞାନ ହୁଏ, ମାତ୍ର ଭକ୍ତିମାର୍ଗରେ ସମଗ୍ର ପରମାତ୍ମାଙ୍କର ଜ୍ଞାନ ହୁଏ; କାରଣ ସ୍ୱୟଂ ଭଗବାନ ଭକ୍ତକୁ ଜ୍ଞାନ ପ୍ରଦାନ କରନ୍ତି* । ଜ୍ଞାନମାର୍ଗରେ ବୈରାଗ୍ୟ ହେଲେ ବସ୍ତୁ ଥାଇ ସେଥିପ୍ରତି ଆସକ୍ତି ନଷ୍ଟ ହୋଇଯାଏ, କିନ୍ତୁ ଭକ୍ତିମାର୍ଗରେ ବୈରାଗ୍ୟ ହେଲେ ବସ୍ତୁର ସ୍ୱତନ୍ତ୍ର ସତ୍ତା ମଧ୍ୟ ନଷ୍ଟ ହୋଇଯାଏ ଓ ତାହା ଭଗବତ୍‌ସ୍ୱରୂପ ହୋଇଯାଏ—**'ବାସୁଦେବଃ ସର୍ବମ୍'** (ଗୀତା ୭ । ୧୯), **'ସଦସଚ୍ଚାହମର୍ଜୁନ'** (ଗୀତା ୯ । ୧୯) । କାରଣ ଅଧିଭୂତ ଅର୍ଥାତ୍ ସମଗ୍ର ପାଞ୍ଚଭୌତିକ ଜଗତ ମଧ୍ୟ ସମଗ୍ର ପରମାତ୍ମାଙ୍କର ହିଁ ଅଙ୍ଗ—**'ସାଧିଭୂତାଧିଦୈବଂ ମାଂ ସାଧିଯଜ୍ଞଂ ଚ ଯେ ବିଦୁଃ'** (ଗୀତା ୭ । ୩୦) ।



ଚରଣକମଳର ଭଜନ କରେ, ତାକୁ ଭକ୍ତି, ବୈରାଗ୍ୟ ଓ ଭଗବତ୍‌ପ୍ରବୋଧ ଅବଶ୍ୟ ପ୍ରାପ୍ତ ହୁଏ ଏବଂ ସେ ଭାଗବତ ହୋଇଯାଏ ତଥା ପରମଶାନ୍ତିର ସାକ୍ଷାତ୍ ଅନୁଭବ କରେ ।"

* ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ ॥
ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।
ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା ॥
(ଗୀତା ୧୦ । ୧୦,୧୧)

"ମୋ'ଠାରେ ସତତ ସଂଲଗ୍ନ ଓ ପ୍ରେମପୂର୍ବକ ମୋ ଭଜନରେ ମଗ୍ନ ରହୁଥିବା ଭକ୍ତମାନଙ୍କୁ ମୁଁ ସେହି ବୁଦ୍ଧିଯୋଗ ପ୍ରଦାନ କରେ, ଯଦ୍ୱାରା ସେମାନେ ମୋତେ ପାଇଯାଆନ୍ତି । ସେହି ଭକ୍ତମାନଙ୍କ ଉପରେ କୃପା କରିବା ପାଇଁ ସେମାନଙ୍କ ସ୍ୱରୂପରେ ସ୍ଥିତ ମୁଁ ସେମାନଙ୍କର ଅଜ୍ଞାନଜନିତ ଅନ୍ଧକାରକୁ ଦେଦୀପ୍ୟମାନ ଜ୍ଞାନପ୍ରଦୀପ ଦ୍ୱାରା ସମ୍ପୂର୍ଣ୍ଣ ନଷ୍ଟ କରିଦିଏ ।"

# ୯. ପ୍ରାର୍ଥନା

## (୧)

ହେ ମୋର ପ୍ରଭୁ ! ଏବେ ତୁମକୁ ମୋ ଉପରେ କୃପା କରିବାକୁ ପଡ଼ିବ । ମୁଁ ଭଲ ହୋଇଥାଏଁ ବା ଖରାପ ହୋଇଥାଏଁ, ତୁମରି ସନ୍ତାନ । ତୁମକୁ ଛାଡ଼ି ମୁଁ କୁଆଡ଼େ ଯିବି? କାହାକୁ କହିବି? କିଏ ମୋ କଥା ଶୁଣିବ? ଏ ସଂସାର ତ ଘୋର ଜଙ୍ଗଲ । ତା' ଆଗରେ କହିବା ଅରଣ୍ୟରୋଦନ ସଙ୍ଗେ ସମାନ । ତୁମ ଛଡ଼ା ଆଉ କିଏ ଶୁଣିବ? ପ୍ରଭୁ! ମୁଁ କାହାକୁ କହିବି? ମୋ ପ୍ରତି କିଏ ବା ଦୟା କରିବ? ଯଦି ମୋର ଭଲ ଭଲ ଗୁଣ ଥାଆନ୍ତା ହୁଏତ କେହି ଶୁଣିଥାନ୍ତା । ମୋ'ଭଳି ଦୋଷୀ ଓ ଅବଗୁଣୀର କଥା କିଏ ଶୁଣିବ? କିଏ ନିଜ ପାଖରେ ମୋତେ ରଖିବ? ହେ ଗୋବିନ୍ଦ ଗୋପାଳ! ଏକା ତୁମେ ହିଁ ଗାଈମାନଙ୍କ ସହିତ ବଳଦମାନଙ୍କୁ ମଧ୍ୟ ପାଖରେ ରଖ, ଘାସ ଦିଅ । ମୁଁ ତ ସେଇ ବଳଦପରି ଜଣେ! ବିଲକୁଲ୍ ଜଙ୍ଗଲୀ ଲୋକଟାଏ! ତୁମେ ହିଁ ମୋତେ ଚଳାଇବ । ଆଉ କିଏ ଅଛି, କାହାର ସାହସ ଅଛି ମୋତେ ଆପଣାର କରିବାକୁ? ଏମିତି ଶକ୍ତି ବା କାହାର ଅଛି? ମୁଁ କାହାର ବା କଣ ଉପକାର କରି ପକାଇବି? ମୋତେ ଆପଣାର କରିନେଇ କିଏ ବା କ'ଣ ଲାଭ ପାଇବ? ମୋତେ ଖାଇବାକୁ ଦେବ, ପିନ୍ଧିବାକୁ ଦେବ, ଘର ଦେବ, ମୋ ପାଇଁ ଖର୍ଚ୍ଚ କରିବ, ହେଲେ ସେ ମୋ'ଠାରୁ ପାଇବ କ'ଣ? ଏମିତିକା ଅକର୍ମା ଲୋକଟାକୁ କିଏ ସମ୍ଭାଳିବ? ହଁ, ଯଦି କୌଣସି ସଦ୍‌ଗୁଣ ବା ଉତ୍ତମ ଲକ୍ଷଣ ଥାଆନ୍ତା, ତେବେ ହୁଏତ କେହି ରଖନ୍ତା । ତୁମେ ଦୟା କରୁଛ ବୋଲି କାମ ଚଳିଯାଉଛି, ନହେଲେ କିଏ ପଚ୍ଚରନ୍ତା ମୋତେ?

ହେ ପ୍ରଭୁ! ଟିକିଏ ଯୋଗ୍ୟତା ଆସିଗଲା ମାତ୍ରେ ମୋର ଅଭିମାନ ବଢ଼ିଯାଉଛି । ଯୋଗ୍ୟତା ତ ଅଳ୍ପ ଟିକିଏ, କିନ୍ତୁ ମୁଁ ଭାବିନେଉଛି ଯେ ମୁଁ ବହୁତ ବଡ଼ ହୋଇଗଲି, ବହୁତ ଯୋଗ୍ୟ ହୋଇଗଲି, ବଡ଼ ଭକ୍ତ ହୋଇଗଲି, ବିଶିଷ୍ଟ ବକ୍ତା ହୋଇଗଲି, ଖୁବ୍ ଚତୁର ହୋଇଗଲି, ଖୁବ୍ ହୁସିଆର୍ ହୋଇଗଲି, ବଡ଼ ବିଦ୍ୱାନ୍ ହୋଇଗଲି, ବଡ଼ ତ୍ୟାଗୀ ଓ ଅନାସକ୍ତ ହୋଇଗଲି! ଭିତରେ ଭିତରେ ଏଭଳି ଅଭିମାନ ଭର୍ତ୍ତି ହୋଇ ରହିଛି । ପ୍ରଭୁ! ଶୁଣିଛି ଯେ ତୁମେ ଅଭିମାନକୁ ଘୃଣା କର ଓ ଦୈନ୍ୟକୁ ଭଲ ପାଅ* । ଯଦି ତୁମକୁ

* ଈଶ୍ୱରସ୍ୟାପ୍ୟଭିମାନଦ୍ୱେଷିତ୍ୱାଦ୍ ଦୈନ୍ୟପ୍ରିୟତ୍ୱାଚ୍ଚ । (ନାରଦଭକ୍ତିସୂତ୍ର ୨୭)

ଅଭିମାନ ଭଲ ନ ଲାଗୁଛି, ତାହାକୁ ନଷ୍ଟ କରିଦିଅ, ଦୂର କରିଦିଅ। ଅବୋଧ ଶିଶୁ କାଦୁଅରେ ଘାଣ୍ଟି ହୋଇ ମଧ୍ୟ ମା' କୋଳକୁ ଯିବାକୁ ଚାହୁଁଛି, ତେବେ ମା' ହିଁ ତ ତାକୁ ଧୋଇଧାଇ ପରିଷ୍କାର କରିବ, ଆଉ କରିବ କିଏ? ଶିଶୁ କଣ ଛାଏଁ ଛାଏଁ ଯାଇ ଗାଧୋଇ-ପାଧୋଇ ପରିଷ୍କାର ହୋଇ ଆସିଲେ ମା' ତାକୁ କୋଳକୁ ନେବ? ତୁମକୁ ମୋର ଅପବିତ୍ରତା ଯଦି ଭଲ ଲାଗୁ ନାହିଁ, ତେବେ ସଫା କରିବ କିଏ? ତୁମକୁ ହିଁ ତ କରିବାକୁ ପଡ଼ିବ !

ହେ ମୋର ସ୍ୱାମୀ! ତୁମେ ହିଁ ମୋର ସବୁକିଛି। ତୁମ ବ୍ୟତୀତ ମୋର କିଏ ଅଛି, ଯିଏ ମୋତେ ଶ୍ରଦ୍ଧାରେ କୋଳେଇ ନେବ? ତେଣୁ ହେ ପ୍ରଭୁ ! ନିଜର ଭାବି ମୋ ଉପରେ କୃପା କର। ମୁଁ ଯେମିତିକା ହୋଇଥିଲେ ବି ତୁମର। ତୁମେ ତୁମର ଦୟାଳୁ ସ୍ୱଭାବରେ ହିଁ ମୋତେ ରକ୍ଷା କର, ମୋ ଲକ୍ଷଣକୁ ଦେଖି ନୁହେଁ। ଯେଉଁ ଭରତଙ୍କର ମହିମା ରାମଙ୍କ ଠାରୁ ମଧ୍ୟ ଅଧିକ ବୋଲି କୁହାଯାଇଛି, ସେ କହିଛନ୍ତି—

**ଜୌଁ କରନୀ ସମୁଝୈ ପ୍ରଭୁ ମୋରୀ। ନହିଁ ନିସ୍ତାର କଲପ ସତ କୋରୀ॥**
**ଜନ ଅବଗୁନ ପ୍ରଭୁ ମାନ ନ କାଉ। ଦୀନ ବଂଧୁ ଅତି ମୃଦୁଲ ସୁଭାଉ॥**

(ମାନସ, ଉତ୍ତର. ୧।୩)

ତୁମର ଏହି ମୃଦୁଳ ସ୍ୱଭାବ କଥା ଶୁଣି ତୁମ ସମ୍ମୁଖକୁ ଆସିବାର ସାହସ କରିଛି। ନିଜ ଆଡ଼କୁ ଦେଖିଲେ ତୁମ ସମ୍ମୁଖକୁ ଆସିବାକୁ ମୋର ସାହସ ହେଉ ନାହିଁ। ତୁମେ ବୃତ୍ରାସୁର, ପ୍ରହ୍ଲାଦ, ବିଭୀଷଣ, ସୁଗ୍ରୀବ, ହନୁମାନ, ଗଜେନ୍ଦ୍ର, ଜଟାୟୁ, ତୁଳାଧାର ବୈଶ୍ୟ, ଧର୍ମବ୍ୟାଧ, କୁବ୍‌ଜା, ବ୍ରଜାଙ୍ଗନା ପ୍ରଭୃତିଙ୍କୁ ଉଦ୍ଧାର କରିଥିବା ଜାଣି ମୋର ସାହସ ହେଲା ଯେ ତୁମେ ମୋତେ ମଧ୍ୟ ଉଦ୍ଧାର କରିବ*। ଲୋଭୀ ବ୍ୟକ୍ତି ଯେପରି ଅଳିଆ ନର୍ଦ୍ଦମାରେ ପଡ଼ିଥିବା ପଇସାକୁ ଉଠାଇନିଏ, ତୁମେ ସେହିପରି ଆମମାନଙ୍କ ଭଳି ଅଳିଆ ଆବର୍ଜନାରେ ପଡ଼ିଥିବା ପତିତମାନଙ୍କୁ ଉଠାଇନେଉଛ। ଛୋଟ ଛୋଟ କଥାରେ ଖୁସି ହୋଇଯାଉଛ— ***'ତୁହ୍ମ ରୀଝହୁ ସନେହ ସୁଠି ଥୋରେଁ***

---

* ସଠ ସେବକ କୀ ପ୍ରୀତି ରୁଚି ରଖିହହିଁ ରାମ କୃପାଲୁ।
ଉପଲ କିଏ ଜଲଜାନ ଜେହିଁ ସଚିବ ସୁମତି କପି ଭାଲୁ॥
ପ୍ରଭୁ ତରୁ ତର କପି ଡାର ପର ତେ କିଏ ଆପୁ ସମାନ।
ତୁଲସୀ କହୂଁ ନ ରାମ ସେ ସାହିବ ସୀଲନିଧାନ॥
(ମାନସ, ବାଲ. ୨୮,୨୯)

(ମାନସ, ବାଲ. ୩୪୨ । ୨) । କାରଣ ତୁମର ସ୍ୱଭାବ ହେଲା—

**ରହତି ନ ପ୍ରଭୁ ଚିତ ଚୂକ କିଏ କୀ । କରତ ସୁରତି ସୟବାର ହିଏ କୀ ॥**

(ମାନସ, ବାଲ. ୨୯ । ୩)

ତୁମର ଏଭଳି ସ୍ୱଭାବ ହୋଇ ନ ଥିଲେ ମୁଁ ତୁମର ପାଖକୁ ବି ଆସି ପାରି ନ ଥାନ୍ତି, ପାଖକୁ ଆସିବାର ସାହସ ବି କରି ପାରି ନ ଥାନ୍ତି! ତୁମେ ମୋର ଅବଗୁଣ ଆଡ଼କୁ ଦୃଷ୍ଟି ବି ଦେଉ ନାହଁ । ସାମାନ୍ୟ ଟିକିଏ ଗୁଣ ଥିଲେ, ସେଇ ଆଡ଼କୁ ଦୃଷ୍ଟି ଦେଉଛ । ସେଇ ଗୁଣତକ ମଧ୍ୟ ତୁମରି କୃପାର ଫଳ । ହେ ପ୍ରଭୁ! ମୁଁ ନିଜକୁ ଦେଖିଲା ବେଳକୁ ଜଣାପଡୁଛି, ମୋ ଭିତରେ କାମ, କ୍ରୋଧ, ଲୋଭ, ମୋହ, ରାଗ, ଦ୍ୱେଷ, ଅଭିମାନ ଭର୍ତ୍ତି ହୋଇରହିଛି । ମୋ'ଠାରୁ ତୁମେ ତ ଅଧିକ ଜାଣୁଛ । ଜାଣିଲେ ବି ତାହାକୁ ଦୋଷ ମଣୁ ନାହଁ—*'ଜନ ଅୱଗୁନ ପ୍ରଭୁ ମାନ ନ କାଉ'* । ସେଇଥିପାଇଁ ମୋ କାମ ଚଳିଯାଉଛି ପ୍ରଭୁ! ଯଦି ତୁମେ ମୋର ଅବଗୁଣ ଦେଖିବା ଆରମ୍ଭ କରିବ, ସବୁଯାକ କେବଳ ଦୋଷ ହିଁ ବାହାରିବ !

ହେ ମୋର ସ୍ୱାମୀ! ତୁମ ବିନା ଆଉ କିଏ ଶୁଣିବ? କେହି ଜାଣିବାକୁ ମଧ୍ୟ ଗ୍ରହିଁବ ନାହିଁ । ହନୁମାନ ବିଭୀଷଣଙ୍କୁ କହିଲେ, "ମୁଁ ଚପଳମତି ବାନରକୁଳରେ ଜାତ ହୋଇଛି । ସକାଳୁ ସକାଳୁ ଯିଏ ଆମର ନାଁ ଧରିବ, ତାକୁ ସେଦିନ ଖାଇବାକୁ ମିଳିବ ନାହିଁ ! ଏପରି ଅଧମ ହୋଇଥିଲେ ମଧ୍ୟ ଭଗବାନ ମୋ ଉପରେ କରୁଣା କରିଛନ୍ତି*, ପୁଣି ତୁମେ ତ ପବିତ୍ର ବ୍ରାହ୍ମଣକୁଳରେ ଜନ୍ମ ଲାଭ କରିଛ!" କେବଳ କାନରେ ଏପରି ମହିମା ଶୁଣି ବିଭୀଷଣ ତୁମର ଶରଣକୁ ଆସିଲେ ଓ କହିଲେ—

**ଶ୍ରୱନ ସୁଜସୁ ସୁନି ଆୟଉଁ ପ୍ରଭୁ ଭଂଜନ ଭୱ ଭୀର ।**
**ତ୍ରାହି ତ୍ରାହି ଆରତି ହରନ ସରନ ସୁଖଦ ରଘୁବୀର ॥**

(ମାନସ, ସୁନ୍ଦର. ୪୫)

ଯିଏ ତୁମର ଶରଣକୁ ଆସେ, ତୁମେ ତାକୁ ଅଭୟ ଆଶ୍ରୟ ଦିଅ,

---

* କହହୁ କୱନ ମୈଁ ପରମ କୁଲୀନା । କପି ଚଂଚଲ ସବହୀଁ ବିଧି ହୀନା ॥
ପ୍ରାତ ଲେଇ ଜୋ ନାମ ହମାରା । ତେହି ଦିନ ତାହି ନ ମିଲୈ ଅହାରା ॥
ଅସ ମୈଁ ଅଧମ ସଖା ସୁନୁ ମୋହୂ ପର ରଘୁବୀର ।
କୀହ୍ନୀ କୃପା ସୁମିରି ଗୁନ ଭରେ ବିଲୋଚନ ନୀର ॥
(ମାନସ, ସୁନ୍ଦର. ୭)

ତାକୁ ସୁଖୀ ପ୍ରଦାନ କର। ଏହା ତୁମର ସ୍ୱଭାବ—

**ଐସୋ କୋ ଉଦାର ଜଗ ମାହାଁ।**

**ବିନୁ ସେୱା ଜୋ ଦ୍ରୱୈ ଦୀନ ପର, ରାମ ସରିସ କୋଉ ନାହିଁ॥**

(ବିନୟପତ୍ରିକା ୧୬୨)

**ଯହି ଦରବାର ଦୀନ କୋ ଆଦର, ରୀତି ସଦା ଚଲି ଆଈ।**

(ବିନୟପତ୍ରିକା ୧୬୫।୫)

ସମସ୍ତେ ଦୀନହୀନକୁ ଆଦର କରନ୍ତି ନାହିଁ। ଯେପର୍ଯ୍ୟନ୍ତ ବ୍ୟକ୍ତି ପାଖରେ କିଛି ଧନସମ୍ପତ୍ତି ଥାଏ, ଗୁଣ ଥାଏ, ଯୋଗ୍ୟତା ଥାଏ, ସେପର୍ଯ୍ୟନ୍ତ ଦୁନିଆ ତାକୁ ଆଦର କରେ। ପ୍ରକୃତରେ ଦୁନିଆ ତା'ର ଗୁଣକୁ ଆଦର କରେ, ତାକୁ (ସ୍ୱରୂପକୁ) ଆଦର କରେ ନାହିଁ। ମାତ୍ର ତୁମେ ମୋତେ ଆଦର କରୁଛ, ମୋତେ ନିଜର ଅଂଶ ମନେକରୁଛ—**'ମମୈବାଂଶୋ ଜୀବଲୋକେ'** (ଗୀତା ୧୫।୭), ***'ସବ ମମ ପ୍ରିୟ ସବ ମମ ଉପଜାଏ'*** (ମାନସ, ଉତ୍ତର. ୮୬।୨)। କେବଳ ମନେକରୁ ନାହଁ, ବରଂ ନିଜର ଅଂଶ ବୋଲି ସ୍ପଷ୍ଟଭାବେ ଜାଣୁଛ ଓ ଜାଣିକରି ଦୟା କରୁଛ। ମୋର ଅବଗୁଣ ଆଡ଼କୁ ଟିକେ ଦୃଷ୍ଟି ବି ଦେଉ ନାହଁ। ଶିଶୁ ଯେପରି ବି ହୋଇଥାଉ, ଯାହା ବି କରୁଥାଉ, ତଥାପି ମାଆ ତାକୁ ନିଜର ଭାବି ଦୟା କରେ, ନହେଲେ ମାଗଣାଟାରେ କିଏ କାହିଁକି ଜଞ୍ଜାଳକୁ ଡାକିବ?

ହେ ପ୍ରଭୁ ! ଯାହା କିଛି ମୋତେ ମିଳୁଛି, ତୁମରି କୃପାରୁ ହିଁ ମିଳୁଛି। ମାତ୍ର ମୁଁ ତାହାକୁ ନିଜର କୃତି ମାନିନେଉଛି। ଏହା ତ ତୁମର ଉଦାରତା, ହେଲେ ମୋର ବିରାଟ ଭୁଲ୍। ପ୍ରଭୁ! ତୁମର ଦେବାର ଢଙ୍ଗ ବଡ଼ ବିଚିତ୍ର ! ସବୁକିଛି ଦେଇ ମଧ୍ୟ ତୁମର ମନେ ରହୁ ନାହିଁ ଯେ ତୁମେ କେତେ ଦେଇଛ ! ତୁମ ଅନ୍ତରରେ ମୋ ଅବଗୁଣଗୁଡ଼ିକର ଛାପ ପଡୁ ନାହିଁ। ତୁମ ଅନ୍ତରରୂପୀ କ୍ୟାମେରା ଯେ କିଭଳି, ତାହା ତୁମେ ହିଁ ଜାଣ ! ସେଥିରେ ଅବଗୁଣଗୁଡ଼ିକ ତ ଉଠୁ ନାହିଁ, କେବଳ ଗୁଣଗୁଡ଼ିକ ଉଠି ଯାଉଛି। ଏହି ଉଦାରତା ତୁମର ସ୍ୱଭାବ! କେବଳ ତୁମକୁ ନିଜର ମାନିବା ଛଡ଼ା ଆଉ ମୋ ପାଖରେ କ'ଣ ଅଛି ପ୍ରଭୁ! ତୁମେ ମୋତେ ଆପଣାର ବୋଲି ଜାଣୁଛ ଓ ମାନୁଛ, ସେଥିପାଇଁ ମୋର କାମ ଚଳିଯାଉଛି। ନହେଲେ ବଡ଼ ମୁସ୍କିଲ୍ ହୋଇଯାଆନ୍ତା! ମୁଁ ବଞ୍ଚି ବି ପାରନ୍ତି ନାହିଁ! କେବଳ ତୁମରି କୃପା ହିଁ ଆଶ୍ରା, ସେଇ କୃପା ଯୋଗୁଁ ବଞ୍ଚି ରହିଛି—

**ଆପ କୃପା କୋ ଆସରୋ, ଆପ କୃପା କୋ ଜୋର।**
**ଆପ ବିନା ଦୀଖେ ନହୀଁ, ତୀନ ଲୋକ ମେଁ ଔର॥**

ଯେତେ କୃପା କଲେ ବି ତୁମ କୃପା ତୃପ୍ତ ହେଉ ନାହିଁ— ***'ଜାସୁ କୃପା ନହିଁ କୃପାଁ ଅଘାତୀ'*** (ମାନସ, ବାଲ. ୨୮ । ୨)! ଏତାଦୃଶ କୃପା ହେତୁ ତୁମେ କୃପା କରି ଗ୍ଲାନିଛ! ତୁମେ ମୋ ଅନ୍ତରର ଟିକିନିଖି ସବୁ କଥା ଭଲଭାବେ ଜାଣିଛ, ହେଲେ ଜାଣି ମଧ୍ୟ ସେ ଦିଗକୁ ଦୃଷ୍ଟି ଦେଉ ନାହଁ। ଏମିତି ବ୍ୟବହାର କରୁଛ ସତେ ଯେପରି ତୁମକୁ କିଛି ଜଣା ନାହିଁ! ତୁମର କରୁଣା ହିଁ ତୁମକୁ ମୋହିତ କରିଦେଉଛି। ତୁମେ ତୁମ ଉଦାର ଗୁଣ ଯୋଗୁଁ ମୋହିତ ହୋଇଯାଉଛ। ତୁମେ କରିଥିବା ଉପକାରକୁ ପୂରା ଭୁଲିଯାଉଛ। ଦେଉଥିବା ପଦାର୍ଥଗୁଡ଼ିକ କଥା ପୂରା ଭୁଲିଯାଉଛ। ତୁମେ ତ ଦେଉଛ, ହେଲେ ମୁଁ ସେଗୁଡ଼ିକୁ ନିଜର ମାନିନେଉଛି! ମୁଁ ଏଡ଼େ କୃତଘ୍ନ ଓ ଗୁଣଗ୍ଲେର! ଯାହା ବି ହେଉ ପଛେ, ମୁଁ କୁପୁତ୍ର ହୋଇଥାଏଁ ବା ସୁପୁତ୍ର ହୋଇଥାଏଁ, ତୁମରି ତ ସନ୍ତାନ ! ତୁମେ ଗୀତାରେ କହିଛ ଯେ ଜୀବ ସଦାକାଳରୁ ହିଁ ତୁମର ସନାତନ ଅଂଶ—**'ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ'** । ତେଣୁ ନିଜର ସନ୍ତାନ ଭାବି ଏମିତି କରୁଣା କରୁଥାଅ।

ହେ ପ୍ରଭୁ! ମୁଁ ତୁମର କେଉଁ କାମରେ ବା ଲାଗି ପାରିବି? ତୁମର କେଉଁ କାମ ବା ମୋ ପାଇଁ ଅଟକି ରହିଛି, ଯାହା ମୋ ଦ୍ୱାରା ହୋଇଯିବ? ମୋର ଯୋଗ୍ୟତା କଣ କୌଣସି କାମରେ ଲାଗି ପାରିବ? ଏହା ତ କେବଳ ଅଭିମାନ ବଢ଼ାଇବାରେ ଲାଗି ପାରିବ। ତୁମ ପ୍ରଦତ୍ତ ଜିନିଷକୁ ମୁଁ ନିଜର ମାନିନେଉଛି ଓ ନିଜର ମାନି ଅଭିମାନ କରୁଛି—ଏତିକି କୃତଘ୍ନ କାମ ମୁଁ କରି ପାରୁଛି! ତଥାପି ତୁମେ ଆଖି ବୁଜି ଦେଉଛ। ଏ ଦିଗକୁ ଦୃଷ୍ଟି ବି ଦେଉ ନାହଁ। ତୁମର ଏହି କୃପାଳୁ ସ୍ୱଭାବ ହେତୁ ହିଁ ତ ମୁଁ ବଞ୍ଚିରହିଛି !

ହେ ପ୍ରଭୁ! ମୁଁ ତୁମକୁ କଣ କହିବି? ମୋ ପାଖରେ କହିବାକୁ କୌଣସି ଶବ୍ଦ ନାହିଁ, କୌଣସି ଯୋଗ୍ୟତା ନାହିଁ! ଖନେଇ ଖନେଇ କହୁଥିବା ଶିଶୁର କଥାକୁ ଯେପରି ତା' ବାପା ଆନନ୍ଦରେ ଶୁଣେ, ସେହିପରି ତୁମେ ବନଚର ଶବରମାନଙ୍କର କଥାକୁ ମଧ୍ୟ ଶ୍ରଦ୍ଧାରେ ଶୁଣ—

**ବେଦ ବଚନ ମୁନି ମନ ଅଗମ ତେ ପ୍ରଭୁ କରୁନା ଐନ।**
**ବଚନ କିରାତନ୍ହ କେ ସୁନତ ଜିମି ପିତୁ ବାଲକ ବୈନ॥**

(ମାନସ, ଅଯୋଧ୍ୟା. ୧୩୬)

ସେହିଭଳି ମୋତେ ମଧ୍ୟ କିଛି କହି ଆସୁ ନାହିଁ। ପ୍ରଭୁ! ମୁଁ ତ କେବଳ ଏତିକି ଜାଣେ ଯେ ଯାହାର କେହି ନ ଥାଏ, ତୁମେ ହିଁ ତାହାର ହୋଇଥାଅ—

**ବୋଲ ନ ଜାଣୁଁ କୋୟ ଅଳ୍ପ ବୁଦ୍ଧି ମନ ଷେଗ ତେଁ।**
**ନହିଁ ଜାକେ ହରି ହୋୟ ଯା ତୋ ମୈଁ ଜାଣୁଁ ସଦା॥**

(କରୁଣାସାଗର ୭୪)

## (୨)

ହେ ପ୍ରଭୁ! ମୋତେ ତୁମ ଚରିତ୍ର ଭଲ ଲାଗୁ, ତୁମ ଲୀଳା ଭଲ ଲାଗୁ, ତୁମର ଗୁଣ ଓ ମହିମା ଭଲ ଲାଗୁ। ଏତିକି କୃପା କର। ମୋର କୌଣସି ସାମର୍ଥ୍ୟ ନାହିଁ। ଆଜି ମୁଁ ଯେଉଁ ତୁମର ନାମ ଜପୁଛି, ତୁମର ଚର୍ଚ୍ଚା ଶୁଣୁଛି, ତୁମ ଆଡ଼କୁ ଅଗ୍ରସର ହେଉଛି, ଏହା ମୋର ଉଦ୍ୟମ ନୁହେଁ କି ମୋ କର୍ମର ଫଳ ନୁହେଁ। କାହାରି ଏମିତି ଯୋଗ୍ୟତା ବା ସାମର୍ଥ୍ୟ ନାହିଁ, ଯିଏ ତୁମ କୃପା ବିନା ତୁମ ଆଡ଼କୁ ଅଗ୍ରସର ହୋଇ ପାରିବ। କାମ, କ୍ରୋଧ, ଲୋଭ, ମୋହ, ମଦ, ମତ୍ସର ଭଳି କେତେ ଅବଗୁଣ ଚତୁର୍ଦିଗରେ ଘେରି ରହିଛନ୍ତି। ପରିବେଶ କେତେ ଖରାପ! ପୁଣି ଏହା ସାଙ୍ଗକୁ କଳିଯୁଗର ରାଜୁତି ! ଏପରି ସମୟରେ ତୁମ ଆଡ଼କୁ ବୃତ୍ତି ରହି ପାରିଛି! ଏହା ତୁମ କୃପା ନୁହେଁ ତ ଆଉ କ'ଣ? ତୁମ କୃପା ବିନା ଜୀବ ନିଜ ସାମର୍ଥ୍ୟରେ ତୁମ ଆଡ଼କୁ ଅଗ୍ରସର ହେବା ଅସମ୍ଭବ। ସନ୍ଥଜନଙ୍କ ସଙ୍ଗ ମଧ୍ୟ ତୁମେ ଦେଉଛ। ପ୍ରେରଣା ମଧ୍ୟ ତୁମେ ଦେଉଛ। ତୁମେ ଏମିତି ପରିବେଶ ଓ ପରିସ୍ଥିତି ସୃଷ୍ଟି କରିଦେଉଛ, ଯାହାଫଳରେ ତୁମ ଆଡ଼କୁ ଆସିବାକୁ ମୁଁ ବାଧ୍ୟ ହୋଇପଡୁଛି! ମାନସମ୍ମାନ, ପ୍ରଶଂସା, ପ୍ରଭୁତ୍ୱ, ଧନ, ଭୋଗ୍ୟପଦାର୍ଥ, ସୁଖ, ବିଳାସବ୍ୟସନ ପ୍ରଭୃତିରେ ମୋର ମନ ଆପେ ଆପେ ଟାଣି ହୋଇଯାଉଛି—ମୋର ବର୍ତ୍ତମାନ ଏଇ ଦଶା! ଏହା ସତ୍ତ୍ୱେ ଯେଉଁ ସତ୍ସଙ୍ଗ ମିଳୁଛି, ସତ୍ ଚର୍ଚ୍ଚା ଶୁଣିବାକୁ ମିଳୁଛି, ତାହା ତୁମରି କୃପାରୁ ହିଁ ସମ୍ଭବ ହେଉଛି। ସାଂସାରିକ ଚିନ୍ତନ ଆପେ ଆପେ ହେଉଛି, କାରଣ କାଳ କାଳରୁ ମୋର ସ୍ୱଭାବ ସେହିପରି ରହିଆସିଛି; ମାତ୍ର ତୁମ ସମ୍ବନ୍ଧୀୟ ଚର୍ଚ୍ଚା, ତୁମର ଚିନ୍ତନ ପ୍ରଭୃତି ତୁମରି କୃପାରୁ ହିଁ ହେଉଛି। ତୁମେ ହିଁ ସଦ୍‌ବୁଦ୍ଧି ଦେଉଛ। ମୋର ସ୍ଥିତି ଅତି ଶୋଚନୀୟ, କିନ୍ତୁ ତୁମେ ମୋ ସ୍ଥିତି ଆଡ଼କୁ ଆଦୌ ଦୃଷ୍ଟି ଦେଉ ନାହଁ, ମୋର ଅବଗୁଣକୁ ଆଦୌ ଦେଖୁ

ନାହିଁ। ଏହା ତୁମର ସ୍ୱଭାବ*। ତୁମେ ତୁମ କରୁଣାରେ ମୋହିତ ହୋଇଯାଉଛ। କରୁଣାର ଅଧୀନ ହୋଇ ତୁମେ ମୋ ଭଳି ହୀନକୁ ତୁମ ଆଡ଼କୁ ଟାଣି ନେଉଛ ! ସେହି କରୁଣା ବଳରେ ହିଁ ମୁଁ ତୁମ ଆଡ଼କୁ ଅଗ୍ରସର ହେଉଛି, ନିଜ ଶକ୍ତି ବା ଭକ୍ତି ବଳରେ ନୁହେଁ !

ହେ ମୋର ସ୍ୱାମୀ! ତୁମେ ଭକ୍ତି ଦେବାରୁ ହିଁ ମୁଁ ଭକ୍ତି କରୁଛି। ନିଜ ଶକ୍ତି ବଳରେ ଭକ୍ତି ପାଇବାର ସାମର୍ଥ୍ୟ କାହାରି ନାହିଁ। ଏ ତ ଉଚ୍ଚ ସ୍ତରର କଥା, ତୁଚ୍ଛ ସାଂସାରିକ ପଦାର୍ଥ ପାଇବାକୁ ଓ ଭୋଗ ଉପଭୋଗ କରିବାକୁ ଇଚ୍ଛା କଲେ ମଧ୍ୟ କେହି ତାହା ପାଇପାରେ ନାହିଁ। ଯଦି ନାଶବାନ୍ ଉପରେ ମଧ୍ୟ କାହାର ସାମର୍ଥ୍ୟ କାମ କରୁ ନାହିଁ, ତେବେ ତୁମର ଅବିନାଶୀ ଭକ୍ତି ଓ ଅବିନାଶୀ ଗୁଣ ନିଜ ସାମର୍ଥ୍ୟ ବଳରେ ମିଳିବ କିପରି? ମଣିଷ ଯେଉଁ ଧନସମ୍ପତ୍ତି, ମାନସମ୍ମାନ, ବିଳାସବ୍ୟସନ ପାଇଁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ମିଛ, କପଟ, ପ୍ରତାରଣା, ଠକାମି ପ୍ରଭୃତି ଦୋଷକୁ ଜାଣି ଶୁଣି ମଧ୍ୟ ଧାରଣ କରେ, ସେହି ଧନ ପ୍ରଭୃତିକୁ ମଧ୍ୟ ସେ ପାଇପାରେ ନାହିଁ ! ପୁଣି ତୁମ ଆଡ଼କୁ ଅଗ୍ରସର ହେବାକୁ ମଣିଷର କି ସାମର୍ଥ୍ୟ ଅଛି? ମଣିଷ ବିନାଶୀକୁ ବି ଧରିପାରେ ନାହିଁ, ପୁଣି ଅବିନାଶୀକୁ କିପରି ଧରିବ? ତାହାକୁ ଧରିବା ଅସମ୍ଭବ। ମୋର କି ସାମର୍ଥ୍ୟ ଅଛି ପ୍ରଭୁ ! ଏହା ତ ତୁମରି କୃପା, ଯାହାଫଳରେ ମୁଁ ତୁମ ସମ୍ବନ୍ଧୀୟ ଚର୍ଚ୍ଚା ଶୁଣୁଛି, ତୁମର ଚରିତ୍ର ଶୁଣୁଛି, ତୁମର ଗୁଣାନୁବାଦ ଶୁଣୁଛି, ତୁମର ନାମ ଶୁଣୁଛି, ତୁମ ଶ୍ରୀବିଗ୍ରହର ଦର୍ଶନ କରୁଛି। ତୁମେ ହିଁ କୃପା କରି ଏପରି ସୁଯୋଗ ପ୍ରଦାନ କରିଛ। ତୁମେ ଏପରି ପରିସ୍ଥିତି ସୃଷ୍ଟି କରିଦେଇଛ ଯେ ମୁଁ ତୁମକୁ ଛାଡ଼ି ଆଉ କୁଆଡ଼େ ଯାଇ ପାରିବି ନାହିଁ? ତୁମେ ହିଁ ଏସବୁ କରୁଛ ଏବଂ ତୁମକୁ ହିଁ କରିବାକୁ ପଡ଼ିବ; କାରଣ ମୁଁ ତୁମର ନିଜର। ଭଲ ହୋଇଥିଲେ ମଧ୍ୟ ତୁମର, ମନ୍ଦ ହୋଇଥିଲେ ମଧ୍ୟ ତୁମର— ***'ଜୋ ହମ ଭଲେ ବୁରେ ତୌ ତେରେ'*** ! ମୁଁ ତୁମର ଆଶ୍ରିତ। ତୁମେ ବା କଣ କରିପାରିବ! ତୁମ ପାଖରେ ନିଜ ଆଡ଼କୁ ଟାଣିବାର ଶକ୍ତି ତ ଅଛି, କିନ୍ତୁ ଦୂରେଇ ଦେବାର ଶକ୍ତି ନାହିଁ। ଏହା ତ ତୁମର ସ୍ୱଭାବ!

ହେ ପ୍ରଭୁ! ତୁମେ ବହୁତ ଦୟା କରୁଛ, ହେଲେ ତାହାକୁ ମୁଁ ଚିହ୍ନି

---

* ଉମା ରାମ ସୁଭାଉ ଜେହିଁ ଜାନା। ତାହି ଭଜନୁ ତଜି ଭାଵ ନ ଆନା ॥
(ମାନସ, ସୁନ୍ଦର. ୩୪। ୨)

ପାରୁ ନାହିଁ। ତୁମରି ପ୍ରଦତ୍ତ ଜିନିଷ ହିଁ ତୁମକୁ ମୋହିତ କରୁଛି! ତୁମରି ପ୍ରଦତ୍ତ ଗୁଣ ଦ୍ୱାରା ହିଁ ତୁମେ ମୋହିତ ହୋଇଯାଉଛ! ମୋର ସ୍ଥିତି, ଅବଗୁଣ, ବିକାର ଓ ବିଗ୍ଭର ଆଡ଼କୁ ତୁମର ଦୃଷ୍ଟି ଆଦୌ ଯାଉ ନାହିଁ। ଏହା ତୁମର ଉଦାର ସ୍ୱଭାବ, ମୋର ଗୁଣ ବା ଯୋଗ୍ୟତା ନୁହେଁ। ଏହି ସ୍ୱଭାବର ଅଧୀନ ହୋଇ ତୁମେ ମୋତେ ତୁମ ଆଡ଼କୁ ଆକୃଷ୍ଟ କରି ନେଉଛ। ମୁଁ ତୁମର ଏହି କୃପାକୁ ଟିକିଏ ବି ବାଣୀରେ ପ୍ରକାଶ କରି ପାରିବି ନାହିଁ। ତୁମ କୃପାକୁ ମୁଁ ଜାଣି ପାରିବି ନାହିଁ କିଂବା ଚିହ୍ନି ପାରିବି ନାହିଁ! ମୋର ଶକ୍ତି ବା କାହିଁ? ମୋ କହିବାରେ ବା କି ମୂଲ୍ୟ ଅଛି? ଯେଉଁମାନେ ମୁକ୍ତ ହୋଇଯାଇଛନ୍ତି, ସେହି ତତ୍ତ୍ୱଜ୍ଞ ମହାପୁରୁଷମାନଙ୍କୁ ବି ତୁମେ ନିଜ ଆଡ଼କୁ ଆକୃଷ୍ଟ କରିନେଉଛ*, ସେମାନଙ୍କୁ ମଧ୍ୟ ନିଜାନନ୍ଦରେ ସ୍ଥିରଭାବେ ରଖାଇ ଦେଉ ନାହଁ! ସେମାନଙ୍କୁ ତୁମେ ତୁମର ପରମପ୍ରେମ ପ୍ରଦାନ କରିବା ପାଇଁ ଲାଳାୟିତ ହୋଇଯାଉଛ ଏବଂ ଏହି କାରଣରୁ ସେମାନଙ୍କ ଜୀବନ୍ମୁକ୍ତିର ଆନନ୍ଦକୁ ଫିକା ଓ ତୁଚ୍ଛ କରିଦେଉଛ। ଯଦି ଜୀବନ୍ମୁକ୍ତ ମହାପୁରୁଷମାନଙ୍କ କଥା ଏଭଳି, ତେବେ ମୁଁ ମୋ କଥା ବା କ'ଣ କହିବି! ମୋର ବୁଦ୍ଧି ଓ ବିଗ୍ଭରଶକ୍ତି ତ ସେପର୍ଯ୍ୟନ୍ତ ପହଞ୍ଚି ବି ପାରୁ ନାହିଁ।

ହେ ପ୍ରଭୁ! ମୁଁ ସାଂସାରିକ ମୋହମାୟାରେ ଆବଦ୍ଧ ଏବଂ ସେଇଥିରେ ହିଁ ସର୍ବଦା ବୁଡ଼ି ରହିବାକୁ ଗ୍ଭହୁଁଛି। ତାହାକୁ ହିଁ ମୁଁ ସୁଖ ଓ ନିଜ ପାଇଁ ହିତକର ଭାବୁଛି, ଯାହା କି ମୋ ପାଇଁ ଅହିତର ପ୍ରଧାନ କାରଣ। ମନ୍ଦକୁ ମୁଁ ଭଲଠାରୁ ମଧ୍ୟ ଅଧିକ ମହତ୍ତ୍ୱ ଦେଉଛି। ମୁଁ ଜାଣିଶୁଣି ଚେଷ୍ଟାପୂର୍ବକ ଲୁଚି ଲୁଚି ପାପ କରୁଛି। ପାପ ଓ ଅନ୍ୟାୟରୁ ସୁଖ ମିଳିବାକୁ ନିଜର ସୌଭାଗ୍ୟ, ଲାଭ, ବୁଦ୍ଧିମତ୍ତା ଓ ଚତୁରତା ବୋଲି ଭାବୁଛି। ପାପରୁ ଉପାର୍ଜିତ ଧନ, ସୁଖ, ବିଳାସବ୍ୟସନ ପ୍ରଭୃତି ମିଳିଗଲେ ଆନନ୍ଦିତ ହୋଇ ଭାବୁଛି ଯେ, ମୁଁ ଧନ୍ୟ ହୋଇଗଲି, କୃତାର୍ଥ ହୋଇଗଲି ! ଏଗୁଡ଼ିକୁ କରିବାର ଦୋଷ ଆଡ଼କୁ ମୋର ଦୃଷ୍ଟି ଆଦୌ ଯାଉ ନାହିଁ। ଏଇ ଦୋଷ ଯୋଗୁଁ ଚଉରାଶୀ ଲକ୍ଷ

---

* ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ॥ (ଶ୍ରୀମଭା. ୧।୭।୧୦)

"ଜ୍ଞାନ ଦ୍ୱାରା ଯେଉଁମାନଙ୍କର ଚିଜ୍ଜଡ଼ଗ୍ରନ୍ଥି ଛିନ୍ନ ହୋଇସାରିଛି, ସେପରି ଆତ୍ମାରାମ ମୁନିଗଣ ମଧ୍ୟ ଭଗବାନଙ୍କ ପ୍ରତି ନିଷ୍କାମ ଭକ୍ତି କରନ୍ତି; କାରଣ ଭଗବାନଙ୍କ ଗୁଣ ଏପରି ଯେ ତାହା ଜୀବମାନଙ୍କୁ ନିଜ ଆଡ଼କୁ ଟାଣି ନିଏ।"

ଯୋନିକୁ ଓ ନରକକୁ ଯିବାକୁ ପଡୁଛି, ଦୁଃଖ ଭୋଗିବାକୁ ପଡୁଛି, କାନ୍ଦିବାକୁ ପଡୁଛି, ତଥାପି ସେଇ ଦିଗକୁ ପୁନର୍ବାର ଯିବାକୁ ମନ ହେଉଛି! କ'ଣ କରିବି ପ୍ରଭୁ! ତୁମେ ହିଁ ମୋତେ ତୁମ ଆଡ଼କୁ ଟାଣି ନେଇଯାଅ।

ହେ ନାଥ! ତୁମ ଆଡ଼କୁ ଯଦି କେବେ କେବେ ଦୃଷ୍ଟି ଯାଉଛି, ତାହା ମଧ୍ୟ ତୁମରି କୃପାରୁ ଯାଉଛି। ମାତ୍ର ମୁଁ ତାହାକୁ ଚିହ୍ନି ପାରୁ ନାହିଁ! ଆସକ୍ତି, କାମନା, ମୋହ, ମୂଢ଼ତା, ଦର୍ପ, ଈର୍ଷା ପ୍ରଭୃତି ବଡ଼ ବଡ଼ ଦୋଷର ଜାଲରେ ମୁଁ ଛନ୍ଦି ହୋଇଯାଇଛି, ଯାହା କି ପତନକାରୀ ଓ ଦୁଃଖପ୍ରଦାୟକ ଆସୁରୀସମ୍ପତ୍ତି। କିନ୍ତୁ ତୁମେ ମୋର ସ୍ୱଭାବ, କୃତି ପ୍ରଭୃତିକୁ ନ ଦେଖି ତୁମ ଆଡ଼କୁ ଆକର୍ଷିତ କରୁଛ, ଏହା ତୁମର ଅହୈତୁକୀ କୃପା, ଏହା ତୁମର ସ୍ୱଭାବ। ମୁଁ ଏତିକି ମଧ୍ୟ ବୁଝି ପାରୁ ନାହିଁ। ଅବଶ୍ୟ କେବେ କେବେ ମନରେ ତରଙ୍ଗ ଉଠେ, ତୁମ ଆଡ଼କୁ ମୋର ଦୃଷ୍ଟି ଚାଲିଯାଏ, ହେଲେ ଏହା ତ ତୁମରି କୃପା। ତୁମେ ଟିକିଏ କୃପା ଦୃଷ୍ଟିରେ ମୋ ଆଡ଼କୁ ଚାହିଁଦେବାରୁ ଏପରି ହୋଇଥାଏ। ନହେଲେ ମୋ'ଠାରେ ସେମିତି କୌଣସି ଯୋଗ୍ୟତା ବା ସାମର୍ଥ୍ୟ ନାହିଁ, ଏ ଦିଗରେ ମୋର ଅଭିରୁଚି ନାହିଁ। ମୋ ଅଭିରୁଚି ସାଂସାରିକ ଭୋଗ ଆଡ଼କୁ ଦୌଡ଼ିବା ପାଇଁ ସଦା ତତ୍ପର। ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ସବୁକିଛି ପ୍ରକୃତିର; ମାତ୍ର ମୁଁ ଏଗୁଡ଼ିକର ବଶୀଭୂତ ହୋଇ ବିଷୟ ସେବନ କରୁଛି, ଏଗୁଡ଼ିକର ଇଚ୍ଛାରେ ଇଚ୍ଛା ମିଳାଇ ଖୁସୀ ହୋଇଯାଉଛି। ମୋର ସ୍ଥିତି ଏଇଆ। ତୁମେ କୃପା କରିବାରୁ ମୋର ଦୃଷ୍ଟି ତୁମ ଆଡ଼କୁ ଯାଉଛି। ଏମିତି ଯୁଗରେ, ଏମିତି ପରିବେଶରେ, ଏମିତି ଜନସମାଜରେ, ଏମିତି ପ୍ରବୃତ୍ତିରେ ରହି ମଧ୍ୟ ତୁମ ଆଡ଼କୁ ଆକର୍ଷିତ ହେବା କେବଳ ତୁମରି କୃପାରୁ ହିଁ ସମ୍ଭବ ହେଉଛି। ତୁମ ଆଡ଼କୁ ଯିବା ପାଇଁ ମୋର ଯେଉଁ ଅଭିରୁଚି ହେଉଛି, ତାହା ବି ତୁମ ପ୍ରଦତ୍ତ। ହେ ପ୍ରଭୁ! ମୋ ପାଖରେ ଅଛି କ'ଣ? କେବଳ ତୁମରି କୃପା। ସେହି କୃପାର ଭରସାରେ ମୁଁ ତୁମ ଆଡ଼କୁ ଆଗେଇ ଚାଲିଛି। ମୋର କୌଣସି ଯୋଗ୍ୟତା ନାହିଁ, କୌଣସି ସାମର୍ଥ୍ୟ ନାହିଁ, କୌଣସି ବିବେକ-ବିଚାର ନାହିଁ! ତୁମରି ପ୍ରଦତ୍ତ ବିବେକକୁ ମୁଁ ନିଜର ମାନିନେଇଛି ଏବଂ ଭାବୁଛି ମୁଁ ବଡ଼ ବୁଦ୍ଧିମାନ୍। ଏହା ତ ମୋର ବୁଦ୍ଧିହୀନତା ଓ ମୂର୍ଖତାର ଚରମସୀମା! ମାତ୍ର ତୁମେ ଏ ଦୁର୍ଗୁଣକୁ ଦେଖୁ ନାହଁ—***ଜନ ଅବଗୁନ ପ୍ରଭୁ ମାନ ନ କାଉ!***

ଅନ୍ୟ ଲୋକମାନେ ଭଲିଯିବେ, ଭ୍ରମରେ ପଡ଼ିଯିବେ; କାରଣ ସେମାନେ ମୋତେ ଜାଣନ୍ତି ନାହିଁ। ମାତ୍ର ତୁମେ ତ ମୋର ଟିକିନିଖି କଥା ଜାଣୁଛ।

ତୁମେ ମୋ ମନର ସ୍ଫୁରଣକୁ ବି ଜାଣୁଛ, ମୋର ପୂର୍ବକୃତ କର୍ମକୁ ବି ଜାଣୁଛ, ମୋର ବର୍ତ୍ତମାନ ସ୍ଥିତିକୁ ବି ଜାଣୁଛ, ମୋର ଭଲ ମନ୍ଦ ସ୍ୱଭାବ ଓ ପୁରୁଣା ଅଭ୍ୟାସକୁ ବି ଜାଣିଛ, କିନ୍ତୁ ସେ ଦିଗକୁ ଦୃଷ୍ଟି ଦେଉ ନାହଁ। ବରଂ ତୁମେ ତୁମ ଆଡ଼କୁ ଆକର୍ଷିତ କରୁଛ, କାରଣ ଏହା ତୁମର ସ୍ୱଭାବ। ଏହି ସ୍ୱଭାବ ଦ୍ୱାରା ହିଁ ତୁମେ ବିଶେଷ କୃପାକରି ଜୀବକୁ ଚଉରାଶୀ ଲକ୍ଷ ଯୋନି, ନରକ, ଦୁଃଖ, କ୍ଷତି, ରୋଗ, ଶୋକ, ଭୟ, ଉଦ୍‌ବେଗ, ସନ୍ତାପ ମଧ୍ୟକୁ ଠେଲି ଦେଉଛ, ଯାହାଫଳରେ ତା'ର ଚେତନା ଜାଗ୍ରତ ହୋଇପାରିବ। ଶୋଇବା ଲୋକକୁ ଯେପରି ଛୁଞ୍ଚି ଫୋଡ଼ିଦେଲେ ସେ ଉଠିପଡ଼ି ସଚେତ ହୋଇଯାଏ, ସେହିପରି ତୁମେ ମୋର ଚେତନା ଜାଗ୍ରତ କରାଇବା ପାଇଁ ଓ ନିଜଆଡ଼କୁ ଟାଣିନେବା ପାଇଁ ପ୍ରତିକୂଳ ପରିସ୍ଥିତି ପ୍ରେରଣ କରୁଛ। ତୁମେ ମୋତେ କୌଣସି ପରିସ୍ଥିତିରେ ସ୍ଥିର ରଖାଇ ଦେଉ ନାହଁ। ଏହା ସତେଯେପରି ତୁମର ନିରନ୍ତର ଆହ୍ୱାନ। ଏମିତି କରି ତୁମେ ନିଜ ଆଡ଼କୁ ଡାକୁଛ। ତୁମେ ସଂସାରକୁ ମଧ୍ୟ ଏମିତି ରଚନା କରିଛ ଯେ ମୋର କୌଣସି ଅବସ୍ଥା ଓ ପରିସ୍ଥିତି ନିରନ୍ତର ରହୁ ନାହିଁ। ସଂସାର ନିରନ୍ତର ମୋ'ଠାରୁ ଦୂରେଇ ଯାଉଛି।

ହେ ପ୍ରଭୁ! ତୁମେ ମୋତେ ସଚେତନ କରାଇବାରେ କେବେ ବି ଊଣା କରୁ ନାହଁ, ମୋତେ ବାରମ୍ବାର ସଚେତନ କରାଉଛ, ତଥାପି ମୁଁ ସଚେତନ ହେଉ ନାହିଁ, ଓଲଟା ବଳ ଓ ବୁଦ୍ଧିମତ୍ତାରେ ପୁଣି ସେଇ ଦୋଷ ଆଡ଼କୁ ମାଡ଼ି ଯାଉଛି! ସେହି ଦୋଷର ଫଳସ୍ୱରୂପ ମିଳୁଥିବା ପ୍ରତିକୂଳ ପରିସ୍ଥିତିରୁ ରକ୍ଷା ପାଇବା ପାଇଁ ମୁଁ ପୁଣି ସେହି ଦୋଷ କରୁଛି—ଏହା ହେଲା ମୋର ଅବସ୍ଥା। ତଥାପି ମୋତେ ବାରମ୍ବାର ସଚେତନ କରାଇ କରାଇ ତୁମେ ବିରକ୍ତ ହୋଇ ପଡୁ ନାହଁ—ଏହା ତୁମର ଅଶେଷ କୃପା! ମୋ ମନରେ ଆଜି ଗୋଟିଏ ଇଚ୍ଛା ଉତ୍ପନ୍ନ ହେଉଛି ତ କାଲି ଗୋଟିଏ କାମନା ଉତ୍ପନ୍ନ ହେଉଛି, ଆଜି ମୁଁ ଗୋଟିଏ ମାର୍ଗରେ ଚାଲୁଛି ତ କାଲି ଆଉ ଗୋଟିଏ ମାର୍ଗ ବଦଳିଯାଉଛି। କାହାର ସଙ୍ଗ କରୁଛି ତ କାହାର କଥା ମାନି ନେଉଛି। ଏମିତି ମୁଁ ଭ୍ରମରେ ପଡ଼ିଯାଉଛି। ତଥାପି ତୁମେ ସେଥିରୁ ଉଦ୍ଧାର କରୁଛ। ଧନ୍ୟ ତୁମର କୃପା !

ହେ ପ୍ରଭୁ! ତୁମ ମନରେ ଜୀବମାନଙ୍କୁ ଉଦ୍ଧାର କରିବାର ଯେଉଁ ଇଚ୍ଛା ରହିଛି, ତାହାକୁ ମୁଁ ବୁଝି ପାରୁ ନାହିଁ। ମାଆର କରୁଣାକୁ ଅଜ୍ଞାନ

ଶିଶୁ କଣ ବା ବୁଝିବ? ମାଆ ତାକୁ ଗାଧୋଇ ଦେଇ ପରିଷ୍କାର କରେ, ହେଲେ ଅବୋଧ ଶିଶୁ ବୁଝି ନ ପାରି କାନ୍ଦେ । ଠିକ୍ ଏହି ଅବସ୍ଥା ମୋର । ତେଣୁ ପ୍ରଭୁ! କୃପା କର । କୃପା ତ କରୁଛ! ମୁଁ କହିଲେ ଯେ କୃପା କରିବ, ଏ କଥା ତ ନୁହେଁ । କୃପା କରିବା ତ ତୁମର ସ୍ୱଭାବ । ତଥାପି ମୁଁ ବାରମ୍ବାର କହୁଛି କୃପା କର, କୃପା କର । ଏ କଥାକୁ ବି ତୁମେ ସହିଯାଉଛ! ଏହା ତୁମର କେତେ ସହିଷ୍ଣୁତା ଓ ଧୈର୍ଯ୍ୟ! ତୁମେ ନିଜ ତରଫରୁ ସ୍ୱାଭାବିକଭାବେ କୃପା କରୁଛ ଓ ସେଇଥିପାଇଁ ଜୀବର ଉଦ୍ଧାର ସମ୍ଭବ ହେଉଛି । ଜୀବମାନଙ୍କର ଯଦି କିଛି ଚେତନା ଜାଗରିତ ହେଉଥାଏ, ତେବେ ତାହା ତୁମରି କୃପାର ହିଁ ଫଳ । ସେମାନେ ନିଷିଦ୍ଧ କର୍ମ କଲେ ତୁମେ ହିଁ ସେମାନଙ୍କୁ ନରକକୁ ପଠାଇ ବିଶୁଦ୍ଧ କରୁଛ । ତୁମେ ଗୀତାରେ କହିଛ—

**ଆସୁରୀଂ ଯୋନିମାପନ୍ନା ମୂଢ଼ା ଜନ୍ମନି ଜନ୍ମନି ।**
**ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍ ॥**

(୧୬।୨୦)

"ହେ କୁନ୍ତୀନନ୍ଦନ ! ସେହି ମୂଢ଼ ଲୋକେ ମୋତେ ପ୍ରାପ୍ତ ନ କରି ଜନ୍ମ ଜନ୍ମାନ୍ତରରେ ଆସୁରୀ ଯୋନିକୁ ଚାଲିଯାଆନ୍ତି ଏବଂ ତା'ଠାରୁ ମଧ୍ୟ ଆହୁରି ଅଧମ ଗତିକୁ ଅର୍ଥାତ୍ ଭୟଙ୍କର ନରକକୁ ଚାଲିଯାଆନ୍ତି ।"

ତୁମେ କେତେ ସୁନ୍ଦର କଥା କହିଛ ଯେ ମୂଢ଼ ଲୋକେ ତୁମକୁ ନ ପାଇ ଆସୁରୀଯୋନିକୁ ଚାଲିଯାଆନ୍ତି । ଏଥିରୁ ଜଣାପଡୁଛି ଯେ ତୁମେ ସମସ୍ତଙ୍କୁ ନିଜ ପାଖକୁ ନେବାକୁ ଚାହୁଁଛ ! ଏଇଥିପାଇଁ ତୁମେ ସେମାନଙ୍କୁ ଏପରି ବିବେକ, ଅବସର ଓ ସଙ୍ଗ ଦେଉଛ, ଯଦ୍ଦ୍ୱାରା ସେମାନେ ତୁମକୁ ପାଇପାରିବେ । ମାତ୍ର ମୁଁ ତୁମ ପ୍ରଦତ୍ତ ବିବେକର ଦୁରୁପଯୋଗ କରି ପତନ ଆଡ଼କୁ ଯାଉଛି ଓ ଏହାକୁ ହିଁ ମୋର ବୁଦ୍ଧିମତ୍ତା ଭାବୁଛି! ହେ ନାଥ! ପତିତର ଉଦ୍ଧାର କରିବା ତୁମର ସହଜ ସ୍ୱଭାବ । ତୁମର ଏହି ସ୍ୱଭାବକୁ ଦେଖି ମୋ ମନରେ ବହୁତ ଉତ୍ସାହ ଆସୁଛି ଯେ ମୁଁ ପତିତ ଓ ତୁମେ ପତିତପାବନ; ତେବେ ପୁଣି ମୋର ଉଦ୍ଧାର ହେବାରେ ସନ୍ଦେହ କ'ଣ?

**ମୈଁ ହରି ପତିତ-ପାୱନ ସୁନେ ।**
**ମୈଁ ପତିତ ତୁମ ପତିତ-ପାୱନ ଦୋଉ ବାନକ ବନେ ॥**

(ବିନୟପତ୍ରିକା ୧୬୦)



॥ ଶ୍ରୀହରିଃ ॥

# ଗୀତାପ୍ରେସ୍‌ରୁ ପ୍ରକାଶିତ ଓଡ଼ିଆ ପୁସ୍ତକାବଳୀ

## ସ୍ୱାମୀ ରାମସୁଖଦାସଙ୍କ ପ୍ରଣୀତ

430 ଗୃହସ୍ଥାଶ୍ରମରେ କିପରି ରହିବା?
754 ଗୀତାମାଧୁର୍ଯ୍ୟ
757 ଶରଣାଗତି
796 ଦେଶର ବର୍ତ୍ତମାନ ଦଶା ତଥା ତାହାର ପରିଣାମ
797 ସନ୍ତାନର କର୍ତ୍ତବ୍ୟ ଏବଂ ସତ୍ୟ ଆଶ୍ରୟ
798 ଗୁରୁତତ୍ତ୍ୱ
817 କର୍ମରହସ୍ୟ
852 ମୂର୍ତ୍ତିପୂଜା ଏବଂ ନାମଜପ
1003 ସତ୍‌ସଙ୍ଗ-ମୁକ୍ତାହାର
1004 ତାତ୍ତ୍ୱିକ ପ୍ରବଚନ
1005 ମାତୃଶକ୍ତିର ଘୋର ଅପମାନ
1121 ଶ୍ରୀମଦ୍ଭଗବଦ୍‌ଗୀତା ସାଧକ-ସଂଜୀବନୀ ଟୀକା
1130 ଗୁରୁ ବିନା କଣ ମୁକ୍ତି ନାହିଁ?
1138 ଆତ୍ମୀୟ ଭଗବାନ
1139 କଲ୍ୟାଣକାରୀ ପ୍ରବଚନ
1208 ଆଦର୍ଶ କାହାଣୀ ଚୟନ
1209 ପ୍ରଶ୍ନୋତ୍ତର ମଣିମାଳା
1267 ସହଜ ସାଧନା
1268 ବାସ୍ତବ ସୁଖ
1269 ଆବଶ୍ୟକ ଶିକ୍ଷା
1270 ନିତ୍ୟଯୋଗର ଉପଲବ୍ଧି
1298 ଗୀତାଦର୍ପଣ
1299 ଭଗବାନ ଓ ଭଗବଦ୍‌ଭକ୍ତି
1321 ଈଶ୍ୱରମୟ ଏ ଜଗତ
1464 ଅମୃତ ବିନ୍ଦୁ
1465 ଗୀତା ଅନ୍ୱୟ ଓ ଅର୍ଥ
1473 ସାଧନ-ସୁଧା-ସିନ୍ଧୁ
1511 ସର୍ବଜନ ଶ୍ରେୟ ପନ୍ଥା
1512 ସାଧନାର ଦୁଇଟି ପ୍ରଧାନ ସୂତ୍ର

## ଶ୍ରୀ ହନୁମାନପ୍ରସାଦ ପୋଦ୍ଦାରଙ୍କ ପ୍ରଣୀତ

865 ପ୍ରାର୍ଥନା
1011 ଆନନ୍ଦ ଲହରୀ
1041 ବ୍ରହ୍ମଚର୍ଯ୍ୟ ଓ ମନକୁ ବଶ କରିବାର କେତୋଟି ଉପାୟ
1186 ଶ୍ରୀଭଗବନ୍ନାମ
1251 ଭବରୋଗର ଔଷଧ ରାମବାଣ

## ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ପ୍ରଣୀତ

1038 ସନ୍ଥ-ମହିମା
1039 ଭଗବାନଙ୍କର ଦୟା ଏବଂ ଭଗବତ୍ କୃପା
1040 ସତ୍‌ସଙ୍ଗର କିଛି ସାରକଥା
1078 ଭଗବତ୍‌ପ୍ରାପ୍ତିର ବିବିଧ ଉପାୟ
1079 ବାଲ୍ୟ-ଶିକ୍ଷା

| | |
|---|---|
| 1089 ଧର୍ମ କ'ଣ? ଭଗବାନ୍ କ'ଣ? | 1205 ରାମାୟଣର କେତେକ ଆଦର୍ଶ ପାତ୍ର |
| 1090 ପ୍ରେମର ବାସ୍ତବ ସ୍ୱରୂପ ଓ ଶୋକନାଶର ଉପାୟ | 1220 ସାବିତ୍ରୀ ଓ ସତ୍ୟବାନ୍ |
| 1091 ଆମର କର୍ତ୍ତବ୍ୟ | 1221 ଆଦର୍ଶ ଦେବୀଚରିତ୍ର |
| 1100 ଶ୍ରୀମଦ୍ଭଗବଦ୍‌ଗୀତା ତତ୍ତ୍ୱବିବେଚନୀ ଟୀକା | 1252 ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ |
| 1163 ବାଳକଙ୍କ କର୍ତ୍ତବ୍ୟ | 1253 ପରଲୋକ, ପୁନର୍ଜନ୍ମ ଏବଂ ବୈରାଗ୍ୟ |
| 1174 ଆଦର୍ଶ ନାରୀ ସୁଶୀଳା | 1274 ପରମାର୍ଥସୂତ୍ର-ସଂଗ୍ରହ |
| 1187 ଆଦର୍ଶ ଭ୍ରାତୃ-ପ୍ରେମ | 1506 ଅମୂଲ୍ୟ ସମୟର ସଦୁପଯୋଗ |
| 1203 ନଳ-ଦମୟନ୍ତୀ | |

## ବିବିଧ

| | |
|---|---|
| 541 ଶ୍ରୀମଦ୍ଭଗବଦ୍‌ଗୀତା ଓ ବିଷ୍ଣୁସହସ୍ରନାମ (କେବଳ ଶ୍ଲୋକ, ପକେଟ ସାଇଜ୍) | 1200 ସତ୍ୟପ୍ରେମୀ ହରିଶ୍ଚନ୍ଦ୍ର |
| 815 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଲୋକାର୍ଥ ସହିତ, ବନ୍ଧାଇ) | 1201 ମହାତ୍ମା ବିଦୁର |
| 826 ଗର୍ଭପାତ ଉଚିତ ବା ଅନୁଚିତ ଆପଣ ଭାବନ୍ତୁ | 1202 ପ୍ରେମୀ ଭକ୍ତ ଉଦ୍ଧବ |
| 854 ଭକ୍ତରାଜ ହନୁମାନ | 1204 ସୁନ୍ଦରକାଣ୍ଡ (ମୂଳ ପାଠ) |
| 856 ଶ୍ରୀହନୁମାନଗ୍ୱଳିଶା | 1218 ଶ୍ରୀରାମଚରିତମାନସ (ମୂଳ ପାଠ, ବଡ଼ ଅକ୍ଷର) |
| 863 ନବଦୁର୍ଗା (ଚିତ୍ରକଥା) | 1219 ଶ୍ରୀପଞ୍ଚରତ୍ନଗୀତା |
| 1008 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଲୋକାର୍ଥ ସହିତ, ପକେଟ ସାଇଜ) | 1248 ମୋହନ (ଚିତ୍ରକଥା) |
| 1009 ଜୟ ହନୁମାନ (ଚିତ୍ରକଥା) | 1249 କହ୍ନେଇ (ଚିତ୍ରକଥା) |
| 1010 ଅଷ୍ଟବିନାୟକ (ଚିତ୍ରକଥା) | 1250 ଓଁ ନମଃ ଶିବାୟ (ଚିତ୍ରକଥା) |
| 1036 ଶ୍ରୀମଦ୍ଭଗବଦ୍‌ଗୀତା (ଲଘୁ ଆକାର) | 1254 ସାଧନ-ନବନୀତ |
| 1068 ଗଜେନ୍ଦ୍ରମୋକ୍ଷଣସ୍ତୋତ୍ରମ୍ | 1342 ବଡ଼ମଣିଷଙ୍କ ଜୀବନରୁ ଶିକ୍ଷା |
| 1069 ନାରାୟଣକବଚମ୍ | 1463 ଶ୍ରୀରାମଚରିତମାନସ (ଅର୍ଥ ସହିତ) |
| 1070 ଆଦିତ୍ୟହୃଦୟସ୍ତୋତ୍ରମ୍ | 1476 ଶ୍ରୀଦୁର୍ଗାସପ୍ତଶତୀ (ଅର୍ଥ ସହିତ) |
| 1154 ଗୋବିନ୍ଦଦାମୋଦରସ୍ତୋତ୍ରମ୍ | 1494 ଚିତ୍ରମୟ ଚୈତନ୍ୟ ଲୀଳା |
| 1157 ଶ୍ରୀମଦ୍ଭଗବଦ୍‌ଗୀତା (ଅର୍ଥ ସହିତ) | 1509 ରାମରକ୍ଷାସ୍ତୋତ୍ର |
| 1173 ଭକ୍ତ ଚନ୍ଦ୍ରିକା | 1551 ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଶ୍ରୀମଦ୍‌ଭାଗବତ |
| | 1750 ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧ (ଶ୍ରୀଜଗନ୍ନାଥଦାସକୃତ) |